# ଲୁହର ଫୁଲ

ଲେଖକ

ଶ୍ରୀ ଯଦୁନାଥ ଦାଶ ମହାପାତ୍ର

ଗ୍ରନ୍ଥମନ୍ଦିର

ପ୍ରକାଶକ :
ଜୟରାମ ମହାପାତ୍ର
ଗ୍ର ନ୍ଥ ମ ନ୍ଦି ର
ବିନୋଦବିହାରୀ, କଟକ-୨
ଶାଖା : ବ୍ରହ୍ମପୁର-୧, (ଗଞ୍ଜାମ)

ମୁଦ୍ରକ :
ଜୟରାମ ମହାପାତ୍ର
ଗ୍ର ନ୍ଥ ପ୍ର କା ଶି ନୀ
ସୂତାହାଟ, କଟକ-୧

ପ୍ରଥମ ସଂସ୍କରଣ :
ଡିସେମ୍ବର, ୧୯୭୯

ମୂଲ୍ୟ ଟ ୧୧.୫୦
ସାଦା ବନ୍ଧେଇ ଟ ୧୦.୦୦

ଅକୃତ୍ରିମ ବନ୍ଧୁ, ବୟୋଜ୍ୟେଷ୍ଠ ସାହିତ୍ୟିକ

ଶ୍ରୀ ରାଧାମୋହନ ଗଡ଼ନାୟକ

କରକମଳେଷୁ

# ଚରିତ୍ର ପରିଚୟ

## ପୁରୁଷ

ନୀଳକଣ୍ଠ—ଲାବଣ୍ୟର ପିତା

ଶ୍ରୀକାନ୍ତ—ଲାବଣ୍ୟର ସ୍ୱାମୀ

ବିଷ୍ଣୁପ୍ରଦ—ଶ୍ରୀକାନ୍ତର ପିତା

ଆନନ୍ଦ—କେତକୀର ସ୍ୱାମୀ

ହରମୋହନ—ଆନନ୍ଦର ପିତା

ଦାମୋଦର—ଲାବଣ୍ୟର ପଡ଼ୋଶୀ କକା
କନକର ପିତା

ସାଧୁ, ମଧୁ, ରାଧୁ — ଲାବଣ୍ୟର ମୃତ କକାଙ୍କ ପୁତ୍ରମାନେ

ବାପୁ—କେତକୀର ପୁଅ

ସଇତା—ଆନନ୍ଦର ଚାକର

## ସ୍ତ୍ରୀ

ଲାବଣ୍ୟ—ନୀଳକଣ୍ଠଙ୍କ କନ୍ୟା

ଲୀଳାବତୀ—ଲାବଣ୍ୟର ମା

କେତକୀ—ଲାବଣ୍ୟର ଭଉଣୀ

ବୃନ୍ଦାବତୀ— ,, ଜେଜେମା

ରଙ୍ଗଲତା—ଶ୍ରୀକାନ୍ତର ମାଁ

ଉମାଶଣୀ—ଆନନ୍ଦର ମା

କନକ—ଦାମୋଦରଙ୍କ କନ୍ୟା

ସନାମା ଖୁଡ଼ୀ—କନକର ମା

# ଏକ

ବାରବର୍ଷ ପରେ ଲାବଣ୍ୟ ବାପଘର ଗାଁକୁ ଫେରୁଛି । ଏକା ନୁହେଁ; ସାଙ୍ଗରେ ବିଲାତଫେରନ୍ତା ସ୍ୱାମୀ ଶ୍ରୀକାନ୍ତ । ଦୁଇଜଣଙ୍କୁ ହିଁ ଆସିବାପାଇଁ ନିମନ୍ତ୍ରଣ କରାଯାଇଥିଲା । ସିଧାସଳଖ ନାଲିମାଟି ରାସ୍ତାରେ ଏକ କିଲୋମିଟର ଦୂରରୁ ଜିପ୍‌ର ଧୂଳି ଦେଖି ଘର ଆଗରେ ରୁଣ୍ଡ ହୋଇଯାଇଥିଲେ ବହୁତ ମଣିଷ—ଝିଅ-କୁଟୁମ୍ବ, ବନ୍ଧୁ-ବାନ୍ଧବ, ବୁଢା-ବୁଢୀ, ଯୁବକ-ଯୁବତୀ, ଏବଂ ସେଥିରୁ ସଂଖ୍ୟାର ଅର୍ଦ୍ଧାଧିକ ବାଳକ-ବାଳିକା ।

ସାନଭଉଣୀର ବିଭାଘରକୁ ବଡଭଉଣୀ ଆସୁଛି; ସେ ପୁଣି ଗୋଟାଏ ଯୁଗ ପରେ । ତାକୁ ଦେଖିବା ପାଇଁ ଉତ୍କଣ୍ଠା ଯେତେ ନୁହେଁ, ସମସ୍ତଙ୍କ ମନରେ କୌତୂହଳ ସେଇ ବିଲାତଫେରନ୍ତା ବରଟିକୁ ଦେଖିବା ପାଇଁ ।

ହବାର ହିଁ କଥା । କାରଣ ବିବାହର ବାରବର୍ଷ ଭିତରେ ଶ୍ରୀକାନ୍ତ କେବେ ହେଲେ ଶ୍ୱଶୁରଘର ଗାଁର ମାଟି ମାଡ଼ିନଥିଲା । ବିବାହଟା ହୋଇଥିଲା ଭୁବନେଶ୍ୱରରେ । ବିବାହର ବର୍ଷକ ପରେ ହିଁ ସେ ସେମାନେ ଓଡ଼ିଶା ଛାଡ଼ିଥିଲେ ସାତସମୁଦ୍ର ତେର ନଈ ପାରି ହୋଇ ବିଲାତରେ ଯାଇ ବସତି ସ୍ଥାପନ କରିଥିଲେ—ଆସିଛନ୍ତି ବର୍ଷେ ହେଲା ଦିଲ୍ଲୀକୁ । ସେ ପୁଣି ଦୁଇବର୍ଷ ପାଇଁ । ତା'ପରେ ପ୍ରାଚ୍ୟ ବା ପାଶ୍ଚାତ୍ୟ କେଉଁ ସୁଦୂର ଭୂଖଣ୍ଡକୁ ଯିବେ ତାହା ନିର୍ଭର କରେ କେନ୍ଦ୍ର ସରକାରଙ୍କ ବୈଦେଶିକ ବ୍ୟାପାର ବିଭାଗ ଉପରେ ।

ଜିପ୍‌ଟା ଆସି ଘର ସାମନାରେ ଠିଆହବା ମାତ୍ରେ ଡ୍ରାଇଭର ପାଖକୁ ବସିଥିବା ଶ୍ରୀକାନ୍ତ ତଳକୁ ଓହ୍ଲାଇ ପଡ଼ିଲା । ତା'ପରେ ଓହ୍ଲାଇଲା ଲାବଣ୍ୟ । ପଛରେ ବସିଥିବା ଚପରାଶୀ ଜଣକ ଜିନିଷପତ୍ର ଓହ୍ଲାଇ ଓହ୍ଲାଇ ସେମାନେ ଆଗେଇଗଲେ ।

ଏକସଙ୍ଗେ ବହୁତ କୌତୂହଳୀ-ଆଖି ସେମାନଙ୍କ ଉପରେ ପଡ଼ିଲା ।

ଫିରିଙ୍ଗିର ମୁହଁକୁ ସମସ୍ତେ ଚାହିଁଲେ । ପୁଣି ଚାହିଁଲେ ଅଗେଇ ଆସୁଥିବା ଏ ଦୁ'ଜଣଙ୍କୁ ।

ସେଇ ବିଲାତଫେରନ୍ତା ବରଟି କାହିଁ ?

ସମସ୍ତଙ୍କର ଆଶାଭଙ୍ଗ ହେଲା ବୋଧହୁଏ । ବିଲାତଫେରନ୍ତା ବରର ମାନେ ତ ବିଲାତ ସାହେବଙ୍କ ପରି ଗୋରା ତକ୍‌ତକ୍ ହୋଇଥିବ । ଲାବଣ୍ୟ ସାଙ୍ଗରେ ଆସୁଥିବା କଳା ମଚ୍‌ମଚ୍ ଚେହେରାର ଲୋକଟି କିଏ ସିଏ ?

ସମସ୍ତଙ୍କ ମୁହଁରେ ପ୍ରଶ୍ନବାଚୀ।

ଲବଣ୍ୟ ବୁଆଉମୁହଁକୁ ଯାଇ ଜେଜେମା'ଙ୍କୁ ପ୍ରଥମେ ଭୂମିଷ୍ଠ ପ୍ରଣାମ କରି ଶ୍ରୀକାନ୍ତକୁ ଚହ୍ନେଇ ଦେଲ—ଏ ଜେଜେମା' । ବାପାଙ୍କ ମା' ।

ଶ୍ରୀକାନ୍ତ ପ୍ରଣାମ କରି ଗୋଡ଼ଧୂଳି ନେଲ । ଦ୍ୱିତୀୟରେ ଯେ ସାମନାରେ ପଡ଼ିଲେ ସେ ହେଉଛନ୍ତି—ଲବଣ୍ୟର ବିଧବା ଖୁଡ଼ୀ । ତା'ପରେ ଯାଇପଡ଼ିଶାର ମାଉସୀ, ଖୁଡ଼ୀ, ଭାଉଜ । ପୁଣି ପିଲଙ୍କ ଭିତରେ ସେଇମିତି କେତେ ସଂପର୍କୀୟ ଦଶବର୍ଷର କକାଠୁ ସାତ ବର୍ଷର ମାଉସୀ ପର୍ଯ୍ୟନ୍ତ ।

ଏମାନେ ସମସ୍ତେ ଆସିଛନ୍ତି କେତକୀର ବାହାଘରକୁ । ଘରର ଶେଷ କାମ; ତେଣୁ ଯେ ଯେଉଁଠି ଥିଲେ, ବାପା ସମସ୍ତଙ୍କୁ ଖୋଜି ଲେଡ଼ି ଆଣିଛନ୍ତି ।

ଲବଣ୍ୟର ଧନଜଣୋଜ ମଉସା ମାଉସୀ ଆସିଛନ୍ତି । ଜଣେ ସମ୍ବଲପୁରରୁ ତ ଜଣେ କୋରାପୁଟରୁ, ଆଉ ସାନ ମାଉସୀଜଣକ ସିଂହଭୂମିରୁ ।

ସାମନା ବୁଙ୍ଗଲାରେ ଧନ ମଉସା ଏକାଠି ବସିଥିଲେ । ତାଙ୍କର ମେଳରେ ଥିଲେ ଧନଜଣୋଜି ମାମୁଁ । ସେମାନଙ୍କୁ ଯଥାବିଧି ମାନ୍ୟ ଜଣାଇ ଲବଣ୍ୟ ଘର ଭିତରକୁ ଗଲା । ଶ୍ରୀକାନ୍ତ ଅଟକିଗଲା ସେଇ ବଙ୍ଗଳାରେ । ସାନମାମୁଁ ବ୍ୟସ୍ତହୋଇ ପଡ଼ି ବାଳକକୁ ଡାକଲେ ଗୋଡ଼ ଧୋଇଦେବାପାଇଁ । ଗୋଡ଼ରୁ ଜୋତା ମୋଜା ଖୋଲୁ ଖୋଲୁ ଶ୍ରୀକାନ୍ତ ଗୋଡ଼ ଧୋଇବାପାଇଁ ଅନିଚ୍ଛା ପ୍ରକାଶ କଲା ।

ସେ ଦିନ କେଉଁ କାଳରେ ଧୂଳି-ଧୂସରିତ ପାଦକୁ ଧୋଇ ଦିଆଯାଉଥିଲା । କିନ୍ତୁ ମୋଜା-ଜୋତାଥିବା ପାଦରେ ଧୂଳିର ଚିହ୍ନ ବା କାହିଁ ?

'ଗୋଡ଼ ଧୋଇବା ଦରକାର ନାହିଁ' କହି ସେ ଯାଇ ମେଲ ହୋଇଥିବା ସତରଞ୍ଜି ଉପରେ ଗୋଡ଼କୁ ଲମ୍ବେଇଦେଇ ବସିପଡ଼ିଲା ।

ଲବଣ୍ୟ ଭିତରକୁ ଯିବା ସଙ୍ଗେ ସଙ୍ଗେ ବାହାରେ ସମବେତ ହୋଇଥିବା କ୍ଷୁଦ୍ର ଜନତାଟି ମଧ୍ୟ ଘର ଭିତରଆଡ଼କୁ ମୁହାଁଇଲା ।

ବାହାରେ ବାଜିଉଠିଲା ମଙ୍ଗଳବାଦ୍ୟ ।

ଘର ଭିତରେ ପ୍ରଚୁର କାମ । ସମ୍ପର୍କୀୟମାନେ ଯାଇ ଯେ ଯାହାର କାମରେ ଲାଗିପଡ଼ିଲେ । ଯେଉଁମାନଙ୍କ ହାତରେ କିଛି କାମ ନାହିଁ ଅର୍ଥାତ୍ ଯେଉଁମାନେ ସୁଦୂର ସଂପର୍କୀୟା ବା ପାଇପଡ଼ିଶା ସଂପର୍କର ମଧ୍ୟ-ବୟସ୍କା ମହିଳା, ସେମାନେ ଯାଇ ଘର ଭିତର ଅଗଣାରେ ମେଲହୋଇଥିବା ଦରି ଉପରେ ବସିପଡ଼ି ନାନାପ୍ରକାର ଆଲୋଚନା ଭିତରେ ବୁଡ଼ିରହିଲେ ।

ସେମାନେ କି ଆଲୋଚନା କଲେ ?

ବାହାଘରଟା କେମିତି ସୁରୁଖୁରୁରେ ହୋଇଯିବ ?

ସମସ୍ତେ କେମିତି ଭଲରେ ପେଟେ ଖାଇ ବିଦାହୋଇଯିବେ ?

ବରକନ୍ୟାଙ୍କର ମଙ୍ଗଳ-କାମନା ?

ନା, ନା, ଏସବୁ ସେମାନଙ୍କର ଚିନ୍ତା କରିବାର ନୁହେଁ । ଏ ଯାହାର ଚିନ୍ତା, ସେ କରିବ । ତେବେ ସେମାନେ ସବୁ କରିବେ କଣ ? ସମୟ କଟାଇବେ କେମିତି ?

ଆଲୋଚନାର ବିଷୟବସ୍ତୁ ଥିଲା ଲବଣ୍ୟର ବର ଅର୍ଥାତ୍ ଶ୍ରୀକାନ୍ତ ।

ସନାମା' ଖୁଡ଼ୀ କହିଲା—ଛିଆ, ଏ କି କଲାପେଣ୍ଟ ବର ? ଏ ପୁଣି କ'ଣ ନା ବିଲାତଫେରନ୍ତା !

ଆର ସାଇର ମଙ୍ଗୁଲୀ ଆଈ ତାଳ ଦେଲା—ତାଙ୍କର ଫେର୍ ଗୁଣ ବାହା ଲୋ ? କେମିତି ଏ ଝିଅ ତାକୁ ରଜିଲା କେଜାଣି ?

ପାଡ଼ୀଘର ମାଉସୀ 'ଅ'-କାର ଛେପ ମେଞ୍ଚାଏ ପକେଇଦେଇ କହିଉଠିଲା —ପାଠପଢ଼ାର ଗୁଣ । ପେରେମ କରି ବାହାହୋଇ ପଡ଼ିଲେ । ବିଲାତ ଲୋକ, କି ଚେହେରା ହବା କଥା ! ମୁଁ ପରା ସେଥର ଶ୍ରୀକ୍ଷେତ୍ରର ଯାଇ ଦେଖିଚି, ବିଲାତ ଲୋକ କେଡ଼େ ସଫା—ତାଲମମସ୍ତି ଭଳିଆ ମୁହଁ—ଜକ୍‌ଜକ୍ ଆଖି, କେଡ଼େ ମୋଟାସୋଟା, ଡେଙ୍ଗା । ଏ ବରଟା,କଣ ଦିଉଚି ? ଏଇ ଝିଅକୁ ଏଇ ବର !

ଗ୍ରେଟିଆ ପଙ୍କତି ଭିତରୁ ଆଉ ଜଣେ କିଏ କହିଉଠିଲା—ସବୁ ଭାଗ୍ୟ ଲୋ । କହିଲେ କଣ ହବ ? ଭାଗ୍ୟରେ ନ ଥିଲେ କୋଉଠୁ ସେ ଭଲିଆ ବର ମିଳିବ ? ଆମ କୋଠି ବାବୁଙ୍କୁ ତ ଦେଖିଚ । ବାଲେଶ୍ୱରର ଲୋକ । କଲଟରୁ ପାଖରେ ଅର୍ଦ୍ଦଲୀ । ସେ ଯେତେବେଳେ ଧୋବ ଫରଫର ପୋଷାକ ପିନ୍ଧି ମୁଣ୍ଡରେ ଧୋବ ପଗଡ଼ି ବାନ୍ଧି ଆସନ୍ତି, କି ଚହଟ ଦେଖା ନ ଯାଆନ୍ତି ! ଲବଣ୍ୟର ବରଟା କୋଉ ଗୁଣରେ ତାଙ୍କ ସରି ହବ ।

ସତ କଥା ମାଉସି ! ଜଣେ ଅଳ୍ପ ବୟସର ବୋହୂ କହିଉଠିଲା—ମୁଁ ତୁମ କୋଆଁରଙ୍କୁ ପ୍ରଥମ ଯୋଉଦିନ ଦେଖିଲି, ଆଖି ଫେରେଇ ପାରିଲିନି । ତାଙ୍କ କାନ୍ଧ ଉପରେ କାଳିଆ ପଟିଟା ତାଙ୍କୁ ଇମିତି ମାନୁଥିଲା···

ହଠାତ୍ ଭାସିଆସୁଥିବା କ୍ରନ୍ଦନରୋଳ ଭିତରେ ଏ ସବୁ ଆଲୋଚନା ବନ୍ଦ ହୋଇଗଲା । ଦୋତାଲା ଉପରୁ କ୍ରନ୍ଦନର ରୋଳ ଭାସିଆସୁଚି ।

ହଠାତ୍ କଣ ହେଲା କି ?

ଲବଣ୍ୟ ମା'ଙ୍କୁ ଖୋଜି ଖୋଜି ଦୋତାଲା ଉପରେ ଯାଇ ହାଜର ହେଇଗଲା । ଦୋତାଲା ଉପରେ ଦୁଇଖଣ୍ଡି ମାତ୍ର ଘର । ତଳଘରଗୁଡ଼ାକ ପୁରୁଣାକାଳିଆ ଜେଜେବାପା ବା ତାଙ୍କ ବାପାଙ୍କ ଅମଳର । ବାପାଙ୍କ ଅମଳ ଘର ବୋଇଲେ ଏଇ ଓ୍ୱେଷ୍ଟିଆ ଗୃହ କୋଠଶବଶିଷ୍ଟ ଦୋତାଲା ଘରଟି । ତଳେ ଦୁଇ ବଖରା; ଆଉ ଉପରେ ସେଇଭଳି ଦୁଇଟି ।

ଘରେ ଏତେ ବଡ଼ ଗୋଟାଏ କର୍ମ । ହୋଇଚାଲିଛି ରନ୍ଧାବଢ଼ା ଖିଆପିଆ ଚାଲିଚ । ଏ ସବୁକୁ ଛାଡ଼ି ମା' ଦୋତାଲା ଉପରେ ଅଛନ୍ତି । ମା'ଙ୍କର ଦୋତାଲା ଉପରେ ଉପସ୍ଥିତିର ସମ୍ବାଦ ତଳୁ ସଂଗ୍ରହ କରିସାରିବା ପରେ ଲବଣ୍ୟ ଭାବୁଥିଲା—ମା' କଣ ଅସୁସ୍ଥ ? ନୋହିଲେ ସବୁ କାମ ଛାଡ଼ି ସେ ଉପରେ କାହିଁକି ?

କେତକୀ ବା କାହିଁ ? ସେ କଣ ନିଜର ଅବସ୍ଥାକୁ ଭୁଲିଯାଇ ମା'ଙ୍କ ସେବାରେ ନିଜକୁ ନିୟୋଜିତ କରିଛି ?

ଆଉ ବାପା ?

ଏତେ ବଡ଼ ପୁରଟା ଭିତରେ ସେ ମଣିଷଟି ବା କାହାନ୍ତି ?

ଦୋତାଲା ଉପରର ସେଇ ଘରଟା । ବାପା ମା'ଙ୍କର ବସତି ସ୍ଥଳ । ଲବଣ୍ୟ ଦଉଡ଼ିବା ପ୍ରାୟ ଅବସ୍ଥାରେ ସେ ଘର ଭିତରକୁ ପଶିଗଲା । ଭିତରଟା ଚୁପ୍‌ଚାପ୍ । ପଲଙ୍କ ଉପରେ ମା' ଉପରକୁ ମୁହଁ ଶୋଇରହିଛନ୍ତି । ପାଖରେ ଶୋଇଛି କେତକୀ ତକିଆ ଉପରେ ମୁହଁ ମାଡ଼ି । ଏ କି ଅବସ୍ଥା ? ଏ କି ଅଘଟଣର ସୂଚନା ?

—ମା' ! ମା ଗୋ !

ହଠାତ୍ ଲବଣ୍ୟର ଏଇ ଡାକରେ ମା' ଫାଟିପଡ଼ିଲେ ଯେମିତି । କଣ୍ଠ ଛାତି ଫଟାଇ ବାହାରିଆସିଲା କ୍ରନ୍ଦନର ରୋଳ ।

କଣ ହେଇଚି ତାଙ୍କର ?

ବୁଝିବାପାଇଁ ଅବସର ନାହିଁ । ଲବଣ୍ୟ ମଧ୍ୟ କାନ୍ଦିଉଠିଲା । ଆଉ କେତକୀ ? ସେ ତ ପୂର୍ବରୁ ହିଁ କାନ୍ଦୁଥିଲା ।

ପନ୍ଦର ମିନିଟ୍ ଧରି ଖାଲି କାନ୍ଦଣା । କାନ୍ଦଣା ପର୍ବ ଆରମ୍ଭ ହେବା ପରେ ପରେ ଆଉ କେତେଜଣ ମହିଳା ଉପରକୁ ଉଠିଆସି ସେଇ କାନ୍ଦଣାରେ ଯୋଗ ଦେଇଥିଲେ ।

ଲୀଳାବତୀ ପ୍ରକୃତସ୍ଥ ହେବା ପରେ ଉପରକୁ ଯାଇଥିବା ମହିଳାମାନେ ପୁଣି ତଳକୁ ଚାଲିଆସିଲେ । କାନ୍ଦଣାର କୌଣସି ଚିହ୍ନ ସେମାନଙ୍କ ମୁହଁରେ ନ ଥିଲା ।

ଲୀଳାବତୀ ପଚାରିଲେ—ଲବଣ୍ୟ ! କେତେବେଳେ ଆସିଲୁ ମା' ? ଜ୍ୱାଇଁ ଆସିଛନ୍ତି ତ ?

ଲାବଣ୍ୟ ମୁଣ୍ଡ ହଲାଇ ସମ୍ମତିସୂଚକ ଉତ୍ତର ଦେଲା ।

ମା' ପୁଣି କହିଲେ—ତେବେ ନକର ଖାଇନିଅ । ଘନଘନ ଗାଡ଼ିରେ ଚଢ଼ି ଆସିଲଣି । ତୁ ତଳକୁ ଯାଆ ମା' ! ତାଙ୍କ ପାଇଁ ବ୍ୟବସ୍ଥା କରଦେ ।

ମା'ଙ୍କର ମର୍ମଭେଦୀ କ୍ରନ୍ଦନର କାରଣ ଲାବଣ୍ୟ ଏଯାଏ ବୁଝିପାରୁନଥିଲା । କେତକୀ ପରଘରକୁ ଚାଲିଯିବ । ସେ ଦୁଃଖରେ କ'ଣ ମା' କାନ୍ଦୁଥିଲେ ? ନା, ସେ କାନ୍ଦଣାର ସମୟ ତ ଏଯାଏ ହୋଇନାହିଁ । ଆଜି ବାହାଘର । କାଲି ଚୌଥି ଅବଢ଼ା । ବାହାଘରର କାନ୍ଦଣାଟା ବିବାହ ପୂର୍ବରୁ ତ ହେବା କଥା ନୁହେଁ । ତା' ହେଲେ କ'ଣ ହେଲା ? କେତକୀ ବା ଶୋଇ ଶୋଇ କାନ୍ଦୁଛି କାହିଁକି ?

କାରଣଟା ମା'ଙ୍କୁ ପଚାରିବାରେ ବାଧା କିଛି ନଥିଲା; କିନ୍ତୁ ସେ ତ ପଚାରି ପାରିଲା ନାହିଁ ।

କହିବାକୁ ଗଲେ ବାରବର୍ଷ ପରେ ବଡ଼ ଭଉଣୀ ସହିତ ସାନ ଭଉଣୀର ଦେଖା । ଲାବଣ୍ୟ ବାହାହୋଇ ଯିବାବେଳେ କେତକୀ ତ ଦୁଇ ତିନି ବର୍ଷର ଶିଶୁ । ଆଜିର ଏଇ ଲାବଣ୍ୟକୁ ସେ କ'ଣ ଚିହ୍ନିପାରୁନାହିଁ ! ନ ଚିହ୍ନିବାର କଥା । ଲାବଣ୍ୟର ଏଇ ମୂର୍ତ୍ତିଟିକୁ କେତକୀ ତ ପ୍ରାୟ ବିସ୍ମୃତ କରିନାହିଁ । ଭଉଣୀ ଭଉଣୀ ଭିତରେ ଯେଉଁ ଆନ୍ତରିକତା ଦୀର୍ଘଦିନ ଅଦର୍ଶନରେ ତା' ମଧ୍ୟ ଜନ୍ମିପାରିନାହିଁ ।

ଲାବଣ୍ୟର ବୟସ ଅଠେଇଶ ।

କେତକୀର ବୟସ ପନ୍ଦର ।

ମା'କହିଲେ—କେତକୀ ! ନାନୀ ଆସିଛି । ତାକୁ ନେଇ ତଳକୁ ଯା । ଖିଆ-ପିଆ କଥା କଣ ହେଲା ଯାଇ ବୁଝ ।

କେତକୀ ପଣତକାନିରେ ଆଖିର ଲୁହ ପୋଛି ଉଠିଲା । ଦୁଇ ଭଉଣୀଙ୍କର ଚାରିଚକ୍ଷୁ ମିଳିତ ହେଲା; ମାତ୍ର ସେ ଚାହାଣିରେ ପରସ୍ପର ପରିଚୟ ନାହିଁ—ଯେମିତି ଦୁଇଜଣ ଦୁଇ ଜଣଙ୍କର ଅଜଣା ।

ହଁ, ଅଜଣା ନୁହେଁ ତ ଆଉ କ'ଣ ? ଖାଲି ସାଦା ଚିଠି ମାଧ୍ୟମରେ ଦେଖା-ସାକ୍ଷାତ, କଥାବାର୍ତ୍ତା ।

କେତକୀର ଅଶ୍ରୁସଜଳ ମୁହଁଟିକୁ ଚାହିଁ ଲାବଣ୍ୟ ଭାବୁଥିଲା, କେତକୀର ହସ୍ତ-ଲିଖିତ ଚିଠିଗୁଡ଼ାକର କଥା । ଏଇ ତ ଦୁଇମାସ ତଳେ କେତକୀ ଲେଖିଥିଲା—ଅପା, ତୁମେ ପରି ଷୋଳବର୍ଷରେ ବାହାହୋଇ ବାପା ମା'ଙ୍କୁ ଛାଡ଼ି ଚାଲିଗଲ, ହେଲେ ମୁଁ ବାହା ହେବିନାହିଁ । ବାପା କହିଛନ୍ତି ମୁଁ ଡାକ୍ତରୀ ପଢ଼ି ଡାକ୍ତରଣୀ ହେବି । ଗାଆଁରେ ବାପାଙ୍କ ପାଖରେ ରହି ଡାକ୍ତରୀ ବ୍ୟବସାୟ କରିବି ।

ଆହୁ ଆଜ ! ଦୁଇମାସ ଯାଉ ନ ଯାଉଣୁ ପନ୍ଦରବର୍ଷରେ କେତକୀ ବଡ଼ ହୋଇଯିବ ।

ଦୁଇ ଭଉଣୀ ଏକତ୍ରିତ ହୋଇଯିବା ପରେ ମା' କହିଲେ—ଚାଲ. ମୁଁ ବି ତଳକୁ ଯାଉଛୁ ।

ମା' ଉଠି ଆଗେ ଚାଲିଗଲେ । ପଛରେ ଦୁଇ ଭଉଣୀ । ଯାଉ ଯାଉ ଲାବଣ୍ୟ ପଚାରିଲା—ତୁ ଡାକ୍ତରଣୀ ହବୁନାହିଁ ?

କେତକୀ ଆଖି ଦୁଇଟିକୁ ନୈରାଶ୍ୟ ମେଘରେ ଆଚ୍ଛାଦିତ କରି ଖାଲି ଚାହିଁ-ରହିଲା ଶୂନ୍ୟଦୃଷ୍ଟିରେ ।

ତା ଜୀବନର ଲକ୍ଷ୍ୟ ଥିଲା ସେ ଡାକ୍ତରଣୀ ହେବ । ବାପା ବି ସେଇ ଜବାବ ଏକସମୟରେ ତାକୁ ଦେଇଥିଲେ; ମାତ୍ର ବାପା ଗାଁକୁ ଆସି ରହିବାର ଦୁଇବର୍ଷ ଭିତରେ କଣ ହେଲା କେଜାଣି, ଆଉ କଥାଗୁଡ଼ା ଆଉ ତାଙ୍କର ମନେରହିଲା ନାହିଁ ।

ଲାବଣ୍ୟ ପଚାରିଲା—ବାପାଙ୍କୁ ତ ଦେଖୁନାହିଁ ?

କେତକୀ ମୁହଁରେ ଜବାବ କିଛି ନାହିଁ ।

ମା' ତଳକୁ ଯାଇ ଡାକ ଛାଡ଼ିଲେ—ଆସୁଛ ନା, ଦୁହେଁ ସେଆଡ଼େ ରହିଗଲ ?

ଦୁଇ ଭଉଣୀ ତଳକୁ ଓହ୍ଲାଇଲେ ।

ସାନମାମୁଁ ସେତେବେଳକୁ ପିଣ୍ଡାରେ ଆସନ ପକାଇ ଶ୍ରୀକାନ୍ତକୁ ବସି ଖୁଆଉଛନ୍ତି ।

ଲେଖାରେ ମାମୁଁ ହେଲେ କ'ଣ ହେବ, ସାନମାମୁଁ ପ୍ରାୟ ଲାବଣ୍ୟର ସମ-ବୟସୀ; ହେଲେ ଅବା ତା'ଠୁ ଦୁଇ ତିନି ବରଷ ବଡ଼ ହୋଇପାରନ୍ତି । ତେଣୁ ସେଠାରେ ଖୁବ୍ ଗୋଟାଏ ମାମୁଁ-ଭଣିଜାର ସମ୍ପର୍କ ରଖି ଦୁହେଁଯାକ କଥାବାର୍ତ୍ତା କରନ୍ତି ନାହିଁ । ବେଳେବେଳେ ଥଟ୍ଟା ତାମସା ବି ଚାଲେ । ଲାବଣ୍ୟକୁ ଦେଖି ସାନମାମୁଁ କହି ଉଠିଲେ—ଲାବଣ୍ୟ, ଏଠିକି ଆ ! ତତେ ନ ଦେଖି ବାବୁଙ୍କ ଭାତଗୁଣ୍ଡା ତଣ୍ଟି ତଳକୁ ଖସୁନାହିଁ । ଆ, ମୋତେ ଛୁଟି ଦେ ।

ଲାବଣ୍ୟ ସାମାନ୍ୟ ହସି ରୋଷେଇ ହଉଥିବା ସ୍ଥାନକୁ ଚାଲିଗଲା । ସାନମାମୁଁ କହିଲେ—ହଉ, ତାକୁ ଲାଜ ଲାଗୁଛି । ତୁ ଆ କେତକୀ ! ବାହାହୋଇ ଚାଲିଯିବା ଆଗରୁ ଭଣୋଇବାବୁଙ୍କ ସହିତ ଟିକିଏ ଚିହ୍ନା ପରିଚୟ କରିନେଇଥା ।

କେତକୀ ବି ଶୁଣି ନଶୁଣିବା ପରି ଚାଲିଗଲା । ଅଗତ୍ୟା ସାନମାମୁଁ ମନ୍ତବ୍ୟ ଦେଲେ—ଯାଃ । କେହି ଆସିଲେ ନାହିଁ । ବାବୁ, ଭଲକି ଖାଅ, ନ ହେଲେ ଭଣିଜୀ ମୋତେ ଦୋଷ ଦବ ।

ଶ୍ରୀକାନ୍ତ ଗାଉଁର ଆବହାଓ୍ୱା ସହିତ ପରିଚିତ ନୁହେଁ । ଜନ୍ମ ଓ ଲାଳନପାଳନ ସହରରେ । ଘର କଟକର କାଠଯୋଡ଼ୀ କୂଳରେ । ସବ୍‌ଜାଇନ୍ ପଢ଼ୁଅଛି ଲାଗିଚ ତାଙ୍କର କୋଠାଟା । ବାପା ଥିଲେ ଡେପୁଟି ମାଜିଷ୍ଟ୍ରେଟ । ମାମୁଁ ଘର ପୁରୀ ସହର । ଶ୍ରୀକାନ୍ତ ବାପ-ମା'ଙ୍କର ଏକମାତ୍ର ସନ୍ତାନ ।

ଦାୟିତ୍ୱପୂର୍ଣ୍ଣ ସ୍ଥାନରେ ରହି ପାର୍ଲାମେଣ୍ଟ ବଳାତ ସହରରେ କଟେଇ କମ୍ କଥା କହିବାର ଅଭ୍ୟାସ ସେ ଯେ କରିନେଇଚି ତା'ନୁହେଁ; ବରଂ ପିଲାଟି ଦିନରୁ ସେ ସ୍ୱଳ୍ପଭାଷୀ । ଏଠି ଆସି ପହଞ୍ଚିବାଠାରୁ ଦୁଇଗୋଟି ଅତି ବଦ୍ଧିକ ପ୍ରଶ୍ନର ହଁ ନା ଉତ୍ତର ଦେବା ଛଡ଼ା ସେ ଆଉ କିଛି କଥାବାର୍ତ୍ତା କରିନାହିଁ । ନବୋଧଙ୍କ ଭଳି ସେ ଖାଲି ସମସ୍ତଙ୍କ ଅଚିହ୍ନା ମୁହଁକୁ ବଲବଲ କରି ଚାହୁଁଚି । ତା ଆଖି ବି ତଲାସ କରୁଚି ଶ୍ୱଶୁରଙ୍କୁ । ତାଙ୍କୁ ତ ସେ ଭଲକରି ଚିହ୍ନେ । ଖାଲି ବିବାହବେଳର ଦେଖା ନୁହେଁ, ବିବାହ ପୂର୍ବରୁ ମଧ୍ୟ ବହୁବାର ସେ ତାଙ୍କୁ ଦେଖିଚି ।

ଏ କ'ଣ ଜନକ-ଦୁହିତା ସୀତା ସ୍ୱୟମ୍ବର ! କର୍ତ୍ତାଙ୍କର ଅଣ୍ଟାବନ୍ଧା ହିଁ ସ୍ପଷ୍ଟ ଭାବରେ ଜଣାପଡ଼ୁଛି ।

ବରଘରର ପ୍ରସ୍ତୁତିଟା ଯେଉଁଭଳି ଦ୍ରୁତ ହେବାର କଥା, ତା' ହେଉନାହିଁ । କାମ ଚାଲିଚି, କିନ୍ତୁ ଗତି ଅତି ମନ୍ଥର । ଏଇ ମନ୍ଥରତା ବେଳେବେଳେ ତତ୍ପରତାରେ ପରିଣତ ହେଉଛି, ଯେତେବେଳେ ଦାଣ୍ଡଦୁଆରେ ବାଜାବାଲାଦଳ ଠୁଙ୍କାକୁ ଠୁଙ୍କା ବାଜା ପିଟି ସେମାନଙ୍କର ଉପସ୍ଥିତି ସମସ୍ତଙ୍କୁ ଅବଗତ କରାଉଛନ୍ତି ।

ମଧ୍ୟାହ୍ନର ଖିଆପିଆ ସରିବା ବେଳକୁ ତିନିଟା ବାଜିଗଲାଣି । ଏ ଓଳି ପ୍ରାୟ ଦୁଇଟାହ ପଡ଼ିଛି । ରାତିକୁ ପଡ଼ିବ ଦୁଇହଜାର ।

ଚାରିଟାବେଳେ ନୀଳକଣ୍ଠ ଫେରିଲେ । ସିଧା ସିଧା ଭିତରକୁ ଆସି ଦୋତାଲା ଉପରକୁ ଉଠିଗଲେ । ତାଙ୍କୁ ଫେରିବାର ଦେଖି ଲୀଳାବତୀ ମଧ୍ୟ ତାଙ୍କ ପଛେ ପଛେ ଦଉଡ଼ିବା ପ୍ରାୟ ଉପରକୁ ଉଠିଲେ । ତାଙ୍କ ପଛରେ ଲାବଣ୍ୟ ।

ପିନ୍ଧିଥିବା ପଂଜାବୀଟା କାଢ଼ି ନୀଳକଣ୍ଠ ପଲଙ୍କ ଉପରେ ଚିତ୍ ହୋଇ ଶୋଇଗଲେ । ମୁହଁ ଗମ୍ଭୀର । ଜଣାପଡ଼ୁଥିଲେ ଖୁବ୍ ଅନ୍ୟମନସ୍କ ଅଥବା ଅସ୍ଥି-ମନସ୍କ ।

ଲୀଳାବତୀ ଯାଇ ପଲଙ୍କ ପାଖରେ ଠିଆହେଲେ । ହଠାତ୍ କିଛି ପଚାରିବାକୁ ସାହସ ହେଲାନାହିଁ । କିଛି ସମୟ ନୀରବ ରହି ଦରଜା ବାହାରେ ଚୁପ୍ ଚାପ୍ ଠିଆ-ହୋଇଥିବା ଲାବଣ୍ୟଙ୍କୁ ଲକ୍ଷ୍ୟ କରି କହିଲେ—ଲାବଣ୍ୟ, ବାହାରେ କାହିଁକି ଠିଆ ହୋଇ ରହିଲୁ ? ଭିତରକୁ ଆ !

ଲାବଣ୍ୟ !

ନୀଳକଣ୍ଠ କଡ଼ ଫେରାଇ ପଚାରିଲେ—ଲାବଣ୍ୟ ଆସିଛି ? କେତେବେଳେ ଆସିଲା । ଏକା···ନା ଶ୍ରୀକାନ୍ତ ଆସିଛି ।

ମା' ଉତ୍ତରଦେବା ପୂର୍ବରୁ ଲାବଣ୍ୟ ଆସି ସାଷ୍ଟାଙ୍ଗ ପ୍ରଣିପାତ କଲା ।

ବାପା ପଚାରିଲେ—କେତେବେଳେ ଆସିଲୁ ମା' ? ସିଧା ଆସିଲୁ ନା କଟକ ହେଇ ?

ଲାବଣ୍ୟ ଉତ୍ତର ଦେଲା—ସିଧା ଆସିଲୁ । 'ସିଧା ଆସିଲୁ' ଜବାବରେ ଅଭିଜ୍ଞ ନୀଳକଣ୍ଠଙ୍କର ବୁଝିବାକୁ ବାକି ରହିଲାନାହିଁ ଯେ ଏକା ନୁହେଁ, ସାଙ୍ଗରେ ଶ୍ରୀକାନ୍ତ ମଧ୍ୟ ଆସିଛି ।

ନୀଳକଣ୍ଠ ଏକ ଲମ୍ବା ଦୀର୍ଘ ନିଃଶ୍ୱାସ ପକେଇଲେ । ତା'ପରେ ଲୀଳାବତୀଙ୍କୁ ଲକ୍ଷ୍ୟ କରି କହିଲେ—ଆଉ ! ଠିଆହୋଇ ରହିଲ କାହିଁକି ? ଯାଅ, ଏଥର ବାହାଘରର ଆୟୋଜନରେ ଲାଗ । ପାଞ୍ଚଶହ ବରଯାତ୍ରୀ ଆସିବେ ଦଶଖଣ୍ଡ ବସ୍‌ରେ । ଭାଗ୍ୟ !

କାହିଁ ? ଲୀଳାବତୀଙ୍କ ମୁହଁରେ ତ ହସ ଫୁଟିଲାନାହିଁ ? ଏ ସମ୍ବାଦ ତାଙ୍କୁ କାମ କରିବା ପାଇଁ ପ୍ରେରଣା ଯୋଗାଇଲା ନାହିଁ । ତଥାପି ସେ ଠିଆହୋଇ ରହିଲେ । କାଲିଠାରୁ ବାଲେଶ୍ୱର ଯାଇଥିବା ଓ ସହସା ଫେରିଥିବା ସ୍ୱାମୀଙ୍କଠାରୁ ଆଉ କିଛି ଶୁଣିବାକୁ ସେ ଯେମିତି ଚାହିଁଥିଲେ । ସ୍ୱାମୀ ତାଙ୍କର ମନର ଭାବ ବୁଝିଲେ କି ନାହିଁ କେଜାଣି, କିନ୍ତୁ କହିଲେ—ଶେଷରେ ସେମାନେ ଗୋଟାଏ ମାସ ସମୟ ଦେଲେ । ଦେଖିବା, ତା' ଭିତରେ ଯୋଗାଡ଼ଯନ୍ତ୍ର କରିବାର ବ୍ୟବସ୍ଥା କରିବା । ତା'ପରେ କଥାର ମୋଡ଼ ବଦଳେଇ କହିଲେ—ଶ୍ରୀକାନ୍ତ କୋଉଠି ରହିଲା ? ଯା ମା, ତାକୁ ଏଇଠିକି ଡାକିଆଣ ! ଅନେକ ଦିନରୁ ତା' ସହିତ ଦେଖାହୋଇନାହିଁ । □□□

# ଦୁଇ

ଅନେକ ଦିନ—ଗୋଟାଏ ଯୁଗ ।

ଉପରର ସିଲିଂ ଦେହରେ ସତେ. ଅବା ଅତୀତର ଘଟଣାଗୁଡ଼ିକ ଚଳଚ୍ଚିତ୍ର ହୋଇ ଭାସିଯାଉଥିଲା । ପନ୍ଦର ବର୍ଷ ତଳର କଥା । ନୀଳକଣ୍ଠ ସେତେବେଳକୁ ଭୁବନେଶ୍ୱରରବାସିନ୍ଦା । ଅନେକ ସଂଗ୍ରାମ ପରେ ସେ ସେତେବେଳକୁ କ୍ଷମତାର ଉଚ୍ଚତମ ଶିଖରରେ ଆସୀନ । ବିରାଟ ସରକାରୀ ଘର, ଗାଡ଼ି, ସେକ୍ରେଟେରୀ, ଷ୍ଟେନୋ, ଚପରାଶି, ଶୀତତାପନିୟନ୍ତ୍ରିତ ଅଫିସ୍, ମାସକୁ ଥରେ ଉଡ଼ାଜାହାଜରେ ଦିଲ୍ଲୀଯାତ୍ରା, କିଛି ତାଙ୍କର ଅଭାବ ନ ଥିଲା ।

ପରିବାର ଖୁବ୍ ଛୋଟ । ସେ, ସ୍ତ୍ରୀ ଲୀଳାବତୀ, କଲେଜରେ ଏଇ ମାତ୍ର ପାଠ ଆରମ୍ଭ କରିଥିବା ଝିଅ ଲବଣ୍ୟ ଓ ଏଇ ମାତ୍ର ସଂସାରର ଆଲୁଅ ଦେଖିଥିବା ଝିଅ କେତକୀ ।

କେତକୀର ଜନ୍ମ ଲବଣ୍ୟ ଜନ୍ମ ହେବାର ଦୀର୍ଘଦିନ ପରେ । ଯୋଉଦିନ ରାତିରେ ଲୀଳାବତୀ ସଲଜ୍ଜ ଭାବରେ ଆସି ସ୍ୱାମୀଙ୍କ ମୁଣ୍ଡ ପାଖରେ ବସି କହିଥିଲେ—ଶୁଣୁଚ, ବୁଢ଼ୀ ବୟସରେ ପୁଣି ସେଇ ଯମ-ଯନ୍ତ୍ରଣା । ପ୍ରଥମେ ନୀଳକଣ୍ଠ କଥାର ତାତ୍ପର୍ଯ୍ୟ କିଛି ବୁଝିପାରି ନଥିଲେ; କିନ୍ତୁ ପରେ ଯେତେବେଳେ ବୁଝିଲେ ମନେ ମନେ ଭାରି ଲଜ୍ଜିତ ହେଲେ ।

ଲବଣ୍ୟର ବୟସ ସେତେବେଳକୁ ପନ୍ଦର ।

ହଠାତ୍ ନୀଳକଣ୍ଠଙ୍କୁ ଅପରାଧୀ ଭଳି ମନେ ହୋଇଥିଲା । ଘରେ ଏତେ ବଡ଼ ଝିଅ । ଯୋଉ ଝିଅ ଚଉଦ ବର୍ଷରେ ମେଟ୍ରିକ୍ ପାଶ୍ କରି କଲେଜରେ ନାମ ଲେଖେଇଲାଣି, ଯାହାର ପୁରୁଷତ୍ୱ ଆଉ ନାରୀତ୍ୱ ବିଷୟରେ ଯଥେଷ୍ଟ ଧାରଣା ହେଲଣି, ତା'ରି ସାମନାରେ ପ୍ରୌଢ଼ା ଲୀଳାବତୀ ପୁଣି ପୁଆତି ହେବେ । ପୁଣି ଗର୍ଭ-ଯନ୍ତ୍ରଣାରେ ଅସ୍ଥିର ହୋଇ ଡାକ୍ତରଖାନାରେ ଭର୍ତ୍ତିହେବେ । ନୀଳକଣ୍ଠଙ୍କୁ ପୁଣି ଅସ୍ଥିର ପଦଚାରଣା କରି ଡାକ୍ତରଖାନା ପିଣ୍ଡାରେ ଅପେକ୍ଷା କରିବାକୁ ହେବ । ଲେବର୍ ରୁମ୍‌ରୁ ବାହାରକୁ ଆସୁଥିବା ଡାକ୍ତର, ନର୍ସଙ୍କ ମୁହଁକୁ ବାରମ୍ବାର ଉତ୍ସୁକ ଦୃଷ୍ଟିରେ ଚାହିଁବାକୁ ପଡ଼ିବ । ଉତ୍କଣ୍ଠାର ଶେଷ ନଥିବ । କି ଲଜ୍ଜାର କଥା !

ଲବଣ୍ୟ ଯେତେବେଳେ ଗର୍ଭକୁ ଆସିଥିଲା, ସେତେବେଳେ ଠିକ୍ ଏମିତି ମଧ୍ୟ-ରାତ୍ରିରେ ଲୀଳାବତୀ ନୀଳକଣ୍ଠଙ୍କର ବୁକୁପାଖରେ ଶୋଇ ସଗର୍ବରେ ଘୋଷଣା କରିଥିଲେ ଯେ, ସେ ମା' ହେବାକୁ ଯାଉଛନ୍ତି । ସେତେବେଳେ କିନ୍ତୁ ଏଇ ସମ୍ବାଦରେ

ନୀଳକଣ୍ଠ ନିଜକୁ ଗର୍ବିତ ଅନୁଭବ କରିଥିଲେ । ତାଙ୍କର ପୌରୁଷ ଉପରେ ଆସ୍ଥା ଆସିଥିଲା । ସେଇ ଦିନଠାରୁ ଲବଣ୍ୟ ଜନ୍ମହେବା ପର୍ଯ୍ୟନ୍ତ ତାଙ୍କ ମୁହଁରେ ଫୁଟି-ଉଠୁଥିଲା ପରିତୃପ୍ତିର ହସ । ସେଦିନ ଥିଲା ଯୌବନର ମଧ୍ୟାହ୍ନ । ଆଜି କିନ୍ତୁ ଯୌବନର ଅପରାହ୍ନରେ ପହଞ୍ଚି ଗର୍ଭବତୀ ନୀଳାବତୀଙ୍କର ମୁହଁକୁ ସେ ଚାହିଁପାରୁ ନଥିଲେ । ପୁଣି ନିଜର ପାରିପାର୍ଶ୍ୱିକ ଅବସ୍ଥା କଥା ଭାବି ସେ ଆହୁରି ଭୟଭୀତ ହୋଇ-ପଡ଼ୁଥିଲେ । ସେ ତ ଆଜି ଆଉ ପରିବାରର ସୀମିତ–ଆଖି ଭିତରେ ବନ୍ଦୀ ହୋଇ ନାହାନ୍ତି । ତାଙ୍କ ଉପରେ ଅହରହ ଦୃଷ୍ଟି ନିକ୍ଷେପ କରୁଚି ସହସ୍ର ଆଖି । ସେମାନେ ସବୁ କ'ଣ ଭାବିବେ ? ଏ ବୟସରେ ପୁଣି ଏଇ କାଣ୍ଡ !

କିନ୍ତୁ ନିଜ ମନକୁ ସେ ଆଶ୍ୱାସନା ଦେଉଥିଲେ, ଯେତେବେଳେ ନୀଳାବତୀ ଭଙ୍ଗାକଣ୍ଠରେ କହୁଥିଲେ—ଠାକୁରେ ଯେତେବେଳେ ଦୟା କଲେଣି, ସେତେ-ବେଳେ ତାଙ୍କର ନିଶ୍ଚୟ କିଛି ଗୋଟାଏ ଉଦ୍ଦେଶ୍ୟ ଅଛି । ବୋଧହୁଏ···

ତାଙ୍କ କଥା ଶେଷ ନ ହଉଣୁ ନୀଳକଣ୍ଠଙ୍କର ମୁହଁ ଉଜ୍ଜ୍ୱଳ ହୋଇଉଠିଥିଲା । ସତରେ ପ୍ରଭୁଙ୍କର କି ଉଦ୍ଦେଶ୍ୟ ! ଏଥର ଯଦି ପୁଅଟିଏ ହୁଏ !

ପୁଅମୁହଁ ଦେଖିବାର ଆଶା ଦୁଇଜଣଙ୍କ ମନରେ ସାମାନ୍ୟ ବଳର ସଞ୍ଚାର କରିଥିଲା; ମାତ୍ର କ'ଣ ହେଲା ! ନିର୍ଦ୍ଧାରିତ ସମୟରେ ଡାକ୍ତରଖାନାର ପ୍ରକୋଷ୍ଠରେ ପୁଅ ପରିବର୍ତ୍ତେ ଜନ୍ମ ନେଲା ଝିଅଟିଏ । ନୀଳକଣ୍ଠ ସେ ଦିନ ଡାକ୍ତରଖାନା ପିଣ୍ଡାରୁ ଫେରିଆସିଥିଲେ ଭଙ୍ଗା ମନ ନେଇ ।

ବିଚିତ୍ର ଏ ଦୁନିଆ । ଏକାଗର୍ଭରୁ ଜନ୍ମ ନେଇଥିବା ପୁଅ ଆଉ ଝିଅ ଭିତରେ ଏ ତାରତମ୍ୟ କାହିଁକି ? ଭଗବାନଙ୍କ ସୃଷ୍ଟିରେ ପୁରୁଷ ଆଉ ସ୍ତ୍ରୀ—ଉଭୟଙ୍କର ତ ପରିପୂରକ । କିଏ କାହାଠୁ ନ୍ୟୂନ ? କାହାର କେଉଁ ଅବୟବର ଅଭାବ ଅଛି ? ଅବୟବର ପାର୍ଥକ୍ୟଟା ତ କାହାକୁ ଅପୂର୍ଣ୍ଣ ରଖିନାହିଁ ! ତେବେ ପିତାମାତାଙ୍କ ମନରେ ଏ ପ୍ରତିକ୍ରିୟା ସୃଷ୍ଟିହୁଏ କାହିଁକି ? ପୁତ୍ରବତୀ ନାରୀ ନିଜକୁ ଯେତେ ଭାଗ୍ୟବତୀ ମନେ-କରେ, ଜନନୀ କନ୍ୟାର ମା' ହୋଇଥିବା ନାରୀ ସେ ଗୌରବ ପାଏନା । ସମାଜର ଏ ଅବସ୍ଥା ପାଇଁ କଣ ଭଗବାନ ଦାୟୀ ? ନା ମଣିଷ ନିଜେ ନିଜେ ହିଁ ଏ ଅବସ୍ଥା ସୃଷ୍ଟି କରିଚି ? ନାରୀକୁ ଦୁର୍ବଳା କରି ବୁଦ୍ଧିମାନ୍ ପୁରୁଷ ତାର ପ୍ରାପ୍ୟାଂଶର ଓଜନଟାକୁ ଚିରଦିନ ଓଜନିଆ କରି ରଖିଛି ।

ତେଣୁ ଶାସ୍ତ୍ର କହେ—ଝିଅ-ଜନମ ପର ଘରକୁ । ଝିଅମାନେ ତ ଚୁଲିମୁଣ୍ଡ । ପରଗୋତ୍ରୀ ହେଲେ ହିଁ ଝିଅର ମୁକ୍ତି । ବାପ, ମା, ଚଉଦପୁରୁଷ ସମସ୍ତଙ୍କର ମୁକ୍ତି । ଘରେ ପ୍ରାପ୍ତବୟସର ଅଭିଆଡ଼ୀ ଝିଅ ଥିଲେ ପିତୃପୁରୁଷ କୁଆଡ଼େ ପିଣ୍ଡ ଖାଇବାକୁ ଆସନ୍ତି ନାହିଁ ।

ସେ ଯାହାହେଉ, ଝିଅ ଯେତେବେଳେ ଜନ୍ମ ହେଇସାରଲାଣି ଆଉ ଷ୍ଟ ବା କଣ ? ଜନ୍ମହବା ପରେ ଝିଅଟାକୁ ତ ଆଉ ପୁଅ ବନେଇଦେଇ ହେବନାହିଁ: କନ୍ତୁ ଗ୍ଲଚଳଣ, ବେଶପୋଷାକରେ କେତକୀ ଆଜ ପର୍ଯ୍ୟନ୍ତ ପୁଅ ହିଁ ରହିଯାଇଚ। ଶାଢ଼ି ପିନ୍ଧିବା ଏଯାଏ ଶିଖିନାହିଁ ।

ପନ୍ଦର ବର୍ଷରେ ଏହି ଝିଅଟିକୁ କନ୍ୟାଦାନ କରି ନୀଳକଣ୍ଠ ଆଜ ପୃଥିବୀର ସମସ୍ତ ଋଣ ପରିଶୋଧ କରିବେ ।

ହଠାତ୍ ମନକୁ ମନ ସେ ହସିଉଠିଲେ । ଆଗର ସେ ଦମ୍ଭ ଆଜ ତାଙ୍କର କାହିଁ ?

ହଁ, ଦମ୍ଭ । କେତକୀ ଜନ୍ମ ହବାର ବର୍ଷକ ପରେ ଲୀଳାବତୀ କହିଥିଲେ— ବୁଝିଲ, ଦୁଇଟି ଝିଅ ଯେତେବେଳେ ଆମ ମୁଣ୍ଡ ଉପରକୁ ଆସିଗଲେଣି, ସେତେ-ବେଳେ ସୁବିଧା ସୁଯୋଗ ଆଉ ଥାଉ ପ୍ରଥମଟିକୁ ପାର୍ କରେଇଦବା । ଲାବଣ୍ୟ ପାଇଁ ଏବେ ପାତ୍ର ଦେଖାଦେଖି କର ।

ଏଇ କଥା ଶୁଣି ନୀଳକଣ୍ଠ ଦମ୍ଭର ସହିତ କହିଥିଲେ—ତୁମ ମୁଣ୍ଡ ବିଗିଡ଼ିଗଲାଣି ଲୀଳା ! ଲାବଣ୍ୟ କାଲିକାର ଝିଅଟା । ପାଠପଢ଼ା ଶେଷ କରିନାହିଁ । ତାର ପୁଣି ବାହା ?

ଲୀଳାବତୀ ଜିଦ୍ କରିଥିଲେ—ଏଇ କ୍ଷମତା ଜୋର୍‌ରେ ଆମେ ଯଦି ତାକୁ ସୁଖରେ ବାହାଘର କରିପାରିଲେ, ସେଇଟା ହିଁ କଣ ଆମ ପକ୍ଷରେ ଭଲ ହେବନାହିଁ ?

ସହସା ନୀଳକଣ୍ଠ ଏ ପ୍ରଶ୍ନର କିଛି ଉତ୍ତର ସିଧାସିଧି ଦେଲେନାହିଁ; କିନ୍ତୁ ପରେ ଭାବିଲେ--କଥାଟା ଏକଦମ୍ ମିଛ ନୁହେଁ । ରାଜନୀତିରେ ଠିକ୍ ଠିକଣା କିଛି ନଥାଏ । ଶଗଡ଼-ଚକର ଅବସ୍ଥା ଭଳି ରାଜନୀତିଜ୍ଞମାନଙ୍କର ଅବସ୍ଥା । ବିଶେଷ କରି ଏଇ କ୍ଷମତା-ରାଜନୀତିର ଯୁଗରେ କେତେବେଳେ ଉପରେ ତ କେତେବେଳେ ତଳେ ।

ତା'ପରେ ସେ ପାତ୍ର ସନ୍ଧାନରେ ଚତୁର୍ଦ୍ଦିଗକୁ ଆଖି ବୁଲେଇଥିଲେ । ଠିକ୍ ଏଇ ସମୟରେ ମିଳିଥିଲା ଶ୍ରୀକାନ୍ତର ସନ୍ଧାନ ।

ଶ୍ରୀକାନ୍ତ !

ରୂପରେ ଶ୍ରୀ ଆଉ କାନ୍ତି ନଥାଉ ପଛେ ଗୁଣରେ ଗଣେଶ । ଶ୍ରୀକାନ୍ତର ବାପା ବିଷ୍ଣୁପଦ ସେତେବେଳକୁ ନୀଳକଣ୍ଠଙ୍କ ନିଜ ବିଭାଗର ଡେପୁଟୀ ସେକ୍ରେଟେରୀ ଆଆନ୍ତି । ଖାଲି ସେତିକି ନୁହେଁ, ସେ ମଧ ତାଙ୍କର ବାଲ୍ୟବନ୍ଧୁ; ସହପାଠୀ । ରେଭେନ୍‌ସା କଲେଜରେ ପଢ଼ୁଥିବାବେଳେ ଉଭୟେ ହଷ୍ଟେଲ୍‌ର ଗୋଟିଏ ରୁମ୍‌ରେ ରହୁଥିଲେ । ଦୁହିଁଙ୍କ ଭିତରେ ଥିଲା ଅତ୍ୟନ୍ତ ଆନ୍ତରିକତା ।

ବିଷ୍ଣୁପଦଙ୍କର ଘର କଟକ ସହରରେ; ମାତ୍ର ତାଙ୍କ ବାପା ଭଲ ପଢ଼ାପଢ଼ିର ପରିବେଶରେ ରହିବା ପାଇଁ ତାଙ୍କୁ ହଷ୍ଟେଲ୍‌ରେ ରଖାଇଥିଲେ । ନୀଳକଣ୍ଠ

ଗୁହାବସ୍ଥାରେ, କହିବାକୁ ଗଲେ ପ୍ରାୟ ପ୍ରତି ସପ୍ତାହରେ, ବିଷ୍ଣୁପଦଙ୍କର ଘରକୁ ଯାଉଥିଲେ । ବିଷ୍ଣୁପଦଙ୍କର ମା' ଅତ୍ୟନ୍ତ ସ୍ନେହଶୀଳା । ନୀଳକଣ୍ଠ ପହଞ୍ଚିଲେ ସେ ଭୁଲିଯାଉଥିଲେ ଯେ ନୀଳକଣ୍ଠ ଅନ୍ୟ କେଉଁ ଘରର ପିଲା । ନିଜ ପୁଅ ଆଉ ନୀଳକଣ୍ଠଙ୍କ ଭିତରେ ସେ କିଛି ପାର୍ଥକ୍ୟ ଦେଖୁନଥିଲେ । ଉଭୟଙ୍କୁ ଖାଇବାକୁ ଦେଇ ପାଖରେ ବସିରହୁଥିଲେ । ନୀଳକଣ୍ଠଙ୍କୁ ବଳେଇ ଖୁଆଇବାରେ ତାଙ୍କର ଥିଲା ଅଦମ୍ୟ ନିଷ୍ଠା । ଆବଶ୍ୟକ ପଡ଼ିଲେ ସେ ନିଜ ହାତରେ ରସଗୋଲାଟାଏ ବା ଛେନାପୋଡ଼-ପିଠା ଖଣ୍ଡେ ନୀଳକଣ୍ଠଙ୍କ ପାଟିରେ ଗୁଞ୍ଜି ଦେଉଥିଲେ ।

ନାରୀର ସ୍ନେହ ହିଁ ସବୁଦିନେ ପୁରୁଷର କାମ୍ୟ । ସେ ନାରୀ ହୋଇଥାଉ ମା' ରୂପରେ, ଭଉଣୀ ରୂପରେ ବା ସ୍ତ୍ରୀ ରୂପରେ ।

ଏଇ ମହୀୟସୀ ଜନନୀଙ୍କର ପୁତ୍ର ବିଷ୍ଣୁପଦଙ୍କର ପ୍ରଥମ ଓ ଏକମାତ୍ର ସନ୍ତାନ ଶ୍ରୀକାନ୍ତ । ଜନନୀ ସେତେବେଳକୁ ଜୀବିତ ଥିଲେ । ବିଷ୍ଣୁପଦଙ୍କ ସହିତ ସେ ବେଳେ ବେଳେ ନୀଳକଣ୍ଠଙ୍କର କ୍ୱାର୍ଟରକୁ ଆସୁଥିଲେ । ନୀଳକଣ୍ଠ ମଧ୍ୟ ତାଙ୍କୁ ଖୁଆଇ-ପିଆଇ ମାନ୍ୟକରି ପୂର୍ବର ଋଣ ପରିଶୋଧ କରୁଥିଲେ । ଶ୍ରୀକାନ୍ତ ବହୁ ସମୟରେ ନୀଳକଣ୍ଠଙ୍କ ଘରକୁ ଆସୁଥିଲା । ତାକୁ ଆସିବା ପାଇଁ ଲୀଳାବତୀ ବାରମ୍ବାର ବାଧ୍ୟ କରୁଥିଲେ । ସେହି ସୂତ୍ରରେ ପରିଚୟ ହୋଇଥିଲା ଶ୍ରୀକାନ୍ତ ଆଉ ଲାବଣ୍ୟର ।

ଶ୍ରୀକାନ୍ତ ଆସି ପହଞ୍ଚିଲେ ଲାବଣ୍ୟ ମନରେ କେଜାଣି କାହିଁକି ଅହେତୁକ ଆନନ୍ଦ ଭରିଯାଉଥିଲା । ସତରେ କ'ଣ ଏଇ ଆନନ୍ଦ ଅହେତୁକ ? ନା, ଏମିତି ସଚରାଚର ଘଟିଥାଏ ? ଯୁବକ ଆଉ ଯୁବତୀ—ପରସ୍ପର ବାରମ୍ବାର ଦର୍ଶନରେ ନିବିଡ଼ ହୁଅନ୍ତି—ଏଇ ତ ସୃଷ୍ଟିର ନିୟମ !

ସେଇ ନିୟମକୁ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ ଶ୍ରୀକାନ୍ତ ଆଉ ଲାବଣ୍ୟ । ସେମାନଙ୍କ ବ୍ୟବହାର ଉପରେ କାହାରି ଦୃଷ୍ଟି ନଥିଲା—ଥିବାର ଆବଶ୍ୟକତା ମଧ୍ୟ ନଥିଲା । କିଏ ବା ଥିଲା ଦୃଷ୍ଟି ଦେବାକୁ ? ନୀଳକଣ୍ଠ ତ ନିଜ ଦାୟିତ୍ୱରେ ଦିନରେ ଅଠର ଘଣ୍ଟା ବ୍ୟସ୍ତ ଥାଆନ୍ତି । ଆଉ ଲୀଳାବତୀ ସଦ୍ୟ-ଜନ୍ମା କୁମାରୀ-କନ୍ୟାକୁ ନେଇ ଅହରହ ନିଜକୁ ବ୍ୟସ୍ତ ରଖୁଥାନ୍ତି ।

ଶ୍ରୀକାନ୍ତ ଆସେ । ଆସିବାର ମାତ୍ରା ତାର ବଢ଼ିଯାଏ । ସେ ଆସି ପହଞ୍ଚିଲେ ଫୁଲ ବଗିଚା ଭିତରେ ବସି ଲାବଣ୍ୟ ତା' ସହିତ ଘଣ୍ଟା ଘଣ୍ଟା ଗଳ୍ପ କରେ । ଖାଲି ସେତିକି ନୁହେଁ, ସେମାନେ ଦିନେ ଦିନେ କ୍ୱାର୍ଟର ଗୁଡ଼ିକ ରାସ୍ତାକୁ ମଧ୍ୟ ପାଦ ବଢ଼ାନ୍ତି; ପାର୍କକୁ ଯାଆନ୍ତି; ମାର୍କେଟକୁ ଯାଆନ୍ତି ।

କାର୍ତ୍ତିକେୟ ଭଳି ରୂପ ନଥାଉ ପଛେ ଶ୍ରୀକାନ୍ତର କଥାକୁହା ଭଙ୍ଗୀ ଲାବଣ୍ୟକୁ । ଟିକିଏ ଲାଜୁଆ ସ୍ୱଭାବର ଯୁବକ, ଯୁବତୀ ମନରେ ଛାପ ଆଙ୍କେ ।

ଏ ଦୁହେଁ ସେଥିରୁ ବାଦ୍ ଯାଆନ୍ତେ କିପରି ?

ଦିନେ ବିଷ୍ଣୁପଦଙ୍କର ମା'ହିଁ ପ୍ରଥମେ ବିବାହର ପ୍ରସ୍ତାବ ଆଣିଲେ । ସେଦିନ ଥାଏ ଦୋଳପୂର୍ଣ୍ଣିମା । ସକାଳେ ନୀଳକଣ୍ଠଙ୍କ ସମେତ ଅନ୍ୟମାନେ ରାଜଧାନୀ ରାସ୍ତାରେ ବୁଲି ବୁଲି ରଙ୍ଗ ଖେଳିଥିଲେ । ରାଜଭବନ, ମୁଖ୍ୟମନ୍ତ୍ରୀ-ନିବାସ କେହି ତ ବାଦ୍ ଯାଇନଥିଲେ । ସେଠାରୁ ଫେରି ସେକ୍ରେଟେରୀ, ଡେପୁଟୀ ସେକ୍ରେଟେରୀମାନଙ୍କ ଘରେ ରଙ୍ଗଖେଳ ।

ବିଷ୍ଣୁପଦଙ୍କ ମା'ଙ୍କ ପାଦରେ ଆଉ ମୁଣ୍ଡରେ ଅବିର ଦେଇ ଫେରିବା-ବେଳକୁ ନୀଳକଣ୍ଠ ତାଙ୍କୁ କହିଆସିଥିଲେ—ମାଉସି ! ଆଜି ସନ୍ଧ୍ୟାରେ ନାତକୁ ନେଇ ଆମ ବସାକୁ ଯିବ । ବିଷ୍ଣୁପ୍ରଦ ବି ସାଥିରେ ଯିବ । ସମସ୍ତଙ୍କର ଆମ ଘରେ ଆଜି ନିମନ୍ତ୍ରଣ ।

ସେହି ନିମନ୍ତ୍ରଣ ରକ୍ଷାକରିବାକୁ ଯାଇ ଶ୍ରୀକାନ୍ତର ଜେଜେମା' ଉଠେଇଥିଲେ ଶ୍ରୀକାନ୍ତ ଆଉ ଲାବଣ୍ୟର ବିବାହ କଥା । ଲୀଳାବତୀ ଏ ପ୍ରସ୍ତାବକୁ ଦୃଢ଼ସ୍ୱରରେ ସମର୍ଥନ କରିଥିଲେ । ଦୈବଯୋଗକୁ ସେତେବେଳକୁ ନୀଳକଣ୍ଠଙ୍କର ବିଧବା ମା' ବୃନ୍ଦାବତୀ ସେଠାରେ ଆଆନ୍ତି । ସେ ତ ଏ ପ୍ରସ୍ତାବ ଶୁଣିବାକ୍ଷଣି ବୟସରେ ଯେମିତି କୋଡ଼ିଏ ବର୍ଷ ସାନ ହୋଇଗଲେ । ପ୍ରବଳ ଉତ୍ସାହରେ ସେ କହିଲେ—ଖୁବ ଭଲ କଥା । ଝିଅ, ମୁଁ ତ ବୁଢ଼ୀ ହେଲିଣି । ମୋ ବଞ୍ଚିଥିବା କାଳଭିତରେ ବଡ଼ ନାତୁଣୀର ବାହାଘରଟା ଦେଖିଗଲେ ମୋର ନିଶ୍ଚୟ ଗତି ମୁକ୍ତି ହେବ । ମୋ ପାଇଁ ମଶାଲ ଧରିବାକୁ କୂଳରେ ତ କେହି ନାହିଁ । ସେ କାମଟା ନାତୁଣୀ-ଜ୍ୱାଇଁ ବା ସେମାନଙ୍କ ପୁଅଦ୍ୱାରା ସିଦ୍ଧ ହୁଏ, ସେଇଥିରେ ମୋର ସ୍ୱର୍ଗବାସ ହେବ । ଆଉ ଡେରି କାହିଁକି ରେ ? ମୁଁ ଗାଁକୁ ଯାଇ ଜ୍ୟୋତିଷଙ୍କୁ ଡାକି ଦିନ ଠିକ୍ କରିଦଉଚି । ଆଗାମୀ ବୈଶାଖରେ ହିଁ ଶେଷକରିଦେବା । କଥାରେ ଅଛି ଝିଅ-ଘିଅକୁ ବେଶି ଦିନ ରଖି-ହୁଏନାହିଁ ।

ନୀଳକଣ୍ଠ ଖାଲି କ୍ଷୀଣ ପ୍ରତିବାଦ କରିଥିଲେ—ଲାବଣ୍ୟର ପାଠପଢ଼ା ଶେଷ ହୋଇନି ।

ଶ୍ରୀକାନ୍ତର ଜେଜେମା' ହଠାତ୍ କହିଉଠିଥିଲେ—ଅସୁବିଧା କିଛି ହବନି ନୀଳକଣ୍ଠ ! ଆମ ଘର ପରି କଟକ ସହରରେ । ନାତୁଣୀ ବୋହୂର ପାଠପଢ଼ାରେ କିଛି ଅସୁବିଧା ହବନି । ସେ ଯେତେ ଚାହିଁବ ସେତେ ପାଠ ପଢ଼ିବ ।

ଅଗତ୍ୟା ନୀଳକଣ୍ଠ ଚୁପ୍ ରହିଥିଲେ । ବିବାହର ଆୟୋଜନ ଚାଲିଥିଲା ଏବଂ ଏକ ବୈଶାଖୀ ଲଗ୍ନରେ ଲାବଣ୍ୟ ତାଙ୍କ ଘରୁ ଅନ୍ୟ ଘରକୁ ଚାଲିଯାଇଥିଲା । ଶ୍ରୀକାନ୍ତ ସେତେବେଳକୁ ଆଇ. ଏ. ଏସ୍. ପରୀକ୍ଷା ଦେଇଥାଏ । ଖୁବ୍ ଧୁମ୍‌ଧାମରେ ବିବାହ

ସମ୍ପନ୍ନ ହୋଇଗଲା । ଅନେକ ଆଲୋକସଜ୍ଜା, ଖାଦ୍ୟ, ପାନୀୟ । ଏହି ବିବାହକୁ ନେଇ ବିଧାନସଭାରେ ତ ଝଡ଼ ଉଠିଥିଲା ନୀଳକଣ୍ଠ ତୀବ୍ର ସମାଲୋଚନାର ଶରବ୍ୟ ହୋଇଥିଲେ । ବିବାହରେ କୁଆଡ଼େ ସେ ବିଭିନ୍ନ ବିଭାଗର ସାହାଯ୍ୟ ନେଇଥିଲେ; ସରକାରୀ ପଦମର୍ଯ୍ୟାଦାର ଅପବ୍ୟବହାର କରିଥିଲେ ।

ନୀଳକଣ୍ଠ ଆଜି ଭାବୁଛନ୍ତି—ସେ ଦିନ ଏ ସମାଲୋଚନାକୁ ଫୁତ୍କାର ମାରି ଉଡ଼େଇଦବାକୁ ସେ ସମର୍ଥ ହୋଇଥିଲେ । କାରଣ ସେ ଯଦି ଅପରାଧୀ ହୋଇ-ଥିଲେ ସବୁଯାକ ନିନ୍ଦାକୁ ମୁଣ୍ଡପୋତି ସହିଯାଇଥାନ୍ତେ; କିନ୍ତୁ ଯେ ସେ ନିରପରାଧୀ, ଦୋଷଶୂନ୍ୟ, ଖାଣ୍ଟି ମଣିଷଟିଏ । ନିଜର ସମସ୍ତ ସଞ୍ଚିତ ଅର୍ଥ ସେ ଏଇ ବିବାହରେ ଖର୍ଚ୍ଚ କରିଥିଲେ ।

ବରପକ୍ଷର ଦାବୀ କିଛି ନଥିଲା । କ'ଣ ବା ସେମାନେ ଦାବୀ କରିଥାଆନ୍ତେ ? ମାତ୍ର ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର ଶ୍ରୀକାନ୍ତ ଯେ ଆଇ. ଏ. ଏସ୍. ପରୀକ୍ଷାରେ ଖୁବ୍ କୃତିତ୍ୱ ପ୍ରଦର୍ଶନ କରିବ, ଏ ବିଶ୍ୱାସ ନୀଳକଣ୍ଠଙ୍କର ଥିଲା । ତେଣୁ ସେ ଝିଅଙ୍କର ଉପଯୁକ୍ତ ସବୁ କିଛି ଦେଇଥିଲେ । କାର୍‌ଠୁ ଆରମ୍ଭକରି କରଚୁଲି ପର୍ଯ୍ୟନ୍ତ ।

ଆଜି ସେ ସବୁ କଥା ନୀଳକଣ୍ଠଙ୍କର ମନେପଡ଼ୁଛି । ସେ ଦିନ ଆଉ ଆଜି ? ସେଦିନ ମନ୍ତ୍ରୀ ନୀଳକଣ୍ଠ ଆଇ. ଏ. ଏସ୍‌. ହେବାକୁ ଯାଉଥିବା ଜାମାତାକୁ କାର୍ ଦାନ କରିଥିଲେ; କିନ୍ତୁ ଆଜି ଏଇ ଅବସ୍ଥାରେ ପୁଣି ନୂତନ ଜାମାତାକୁ ଆଉ ଏକ କାର୍ ଦାନ କରିବା···

କିନ୍ତୁ ସେମାନେ ଅଡ଼ିବସିଥିଲେ । ବଡ଼ ଝିଅଙ୍କୁ ଯେତେବେଳେ କାର୍ ଦିଆଯାଇଛି, ସାନ ଝିଅଙ୍କୁ ନ ଦେଲେ ବିବାହ ହୋଇପାରିବ ନାହିଁ ।

ଶେଷ ମୁହୂର୍ତ୍ତରେ ଏ ଖବର ପାଇ ନୀଳକଣ୍ଠ ନିଜେ ହିଁ ଗତକାଲି ବାଲେଶ୍ୱର ଯାତ୍ରା କରିଥିଲେ । ଅନେକ ଅନୁରୋଧ ପରେ ମାସେ ମହଲତ ନେଇଛନ୍ତି ।

କିନ୍ତୁ ଏଇ ମାସକ ଭିତରେ ତିରିଶ ହଜାର ଟଙ୍କାର ବ୍ୟବସ୍ଥା ? ନୀଳକଣ୍ଠ ବେଙ୍କରେ ଗଚ୍ଛିତ ଥିବା ଟଙ୍କା ପ୍ରତି ଦୃଷ୍ଟିନିକ୍ଷେପ କଲେ । ବାହାଘରର ସମସ୍ତ ଖର୍ଚ୍ଚ ଯାଇ ଉଦ୍‌ବୃତ୍ତ ରହିବ ଆଉ କେତେ ଟଙ୍କା ? ତିନି ଚାରି ହଜାର ଭିତରେ । ଆଉ ଭୂସମ୍ପତ୍ତି ? ସେ ବି ଯାହା ଅଛି ସେ ତ ସାନଭାଇର ପିଲାପିଲିଙ୍କ ନିଅଣ୍ଟ ! ପିତୃହୀନ ସେଇ ପୁତୁରାମାନଙ୍କୁ ଚାହିଁ ନୀଳକଣ୍ଠଙ୍କ ଆଖି ସଜଳ ହୋଇଉଠିଲା । ସେମାନଙ୍କ ମୁହଁରୁ ଆହାର ଛଡ଼େଇ ଆଣି ନିଜ ଭାଗ ଭୂସମ୍ପତ୍ତି ବିକ୍ରୟ କରି ଝିଅଙ୍କୁ 'କାର୍' ଯୌତୁକ ଦେବା ଏକ ଯନ୍ତ୍ରଣାକର ବ୍ୟାପାର ହେବ ।

ଦେଖାଯିବ ।

(ବହୁତ ଚିନ୍ତା ପରେ ମଣିଷ ଯେତେବେଳେ କୌଣସି ସିଦ୍ଧାନ୍ତରେ ପହଞ୍ଚି ନ ପାରେ, ସେତେବେଳେ 'ଦେଖାଯିବ'ର ଅନିଶ୍ଚିତତା ଭିତରେ ହିଁ ସେ ନିଜକୁ ନିକ୍ଷେପ କରେ ।)

ନୀଳକଣ୍ଠଙ୍କ ଆଖିରେ ସେହି ଅନିଶ୍ଚିତତାର ରୂପ—ମୁହଁରେ ସୀମାହୀନ କ୍ଳାନ୍ତି । ଏ କ୍ଳାନ୍ତି ଯେମିତି ଆଗାମୀ ଅନେକ ଦିନପାଇଁ ତାଙ୍କୁ ଗ୍ରାସ କରିବସିଛି ।

ନିଜ ମନର ଭାବନା ଅନ୍ୟ କେହି ବୁଝେନା; ଅନ୍ୟ କାହାକୁ ବୁଝେଇବା ମଧ୍ୟ ସମ୍ଭବ ହୁଏନା । ଯଦି ମଣିଷ ନିଜ ମନର ଭାବନାକୁ ଅନ୍ୟ କାହାକୁ ବୁଝାଇ ପାରୁଥାନ୍ତା ! କିନ୍ତୁ ଭଗବାନଙ୍କର ଏଇ ବିରାଟ ସୃଷ୍ଟି ହିଁ ତ ଅବୁଝା । କିଏ କାହାର ରହସ୍ୟ ଉଦ୍ଘାଟନ କରିପାରୁଛି !

ନୀଳକଣ୍ଠ ଅତି ନିଃସହାୟ ଭାବରେ ଘରଅଡ଼କୁ ଦୃଷ୍ଟି ନିକ୍ଷେପ କରୁଥିଲେ । ହଠାତ୍ ଶୁଭିଲା—ବାପା !

ସେ ଦରଜାକୁ ଚାହିଁଲେ । ଲାବଣ୍ୟ ଆଉ ଶ୍ରୀକାନ୍ତ ।

ହଠାତ୍ ତାଙ୍କର ମନେ ହେଲା—(ଏଇ ପରିବର୍ତ୍ତନଶୀଳ ଜଗତରେ ପରିବର୍ତ୍ତନଟା ହିଁ ସତ୍ୟ ।) ତା' ନହେଲେ ଯେଉଁ ଦୁଇଟି ମୂର୍ତ୍ତି ସେ ବାରବର୍ଷ ତଳେ ଦେଖିଥିଲେ, ଏ କ'ଣ ସେଇ ? ମୂର୍ତ୍ତି ଏ କ'ଣ ସେଇ ଲାବଣ୍ୟ, ଯେ ସେ ଦିନ ହରିଣୀର ଚଞ୍ଚଳତା ନେଇ ତାଙ୍କ ପାଖରୁ ଅନ୍ତର ହୋଇଯାଇଥିଲା ! ଏ କଣ ସେଇ ଲାବଣ୍ୟ, ଯେ ଅତି ନିବିଡ଼ଭାବରେ ତାଙ୍କର ଅତି ନିକଟରେ ଥିଲା ! ସେ ଯେମିତି ଅନୁଭବ କଲେ ନିଜର କନ୍ୟା ତାଙ୍କଠୁ ଆଜି କେତେ ଦୂରରେ ! ଅନ୍ତରର ସେ ଘନିଷ୍ଠ ସମ୍ପର୍କ ଝାପ୍ସା ହୋଇଯାଇଛି । ଆଉ ପଛରେ ଆସିଥିବା ଏଇ ଶ୍ରୀକାନ୍ତ ! ସେ ଦିନର ବନ୍ଧୁପୁତ୍ର ଆଜିର ଜାମାତା !

ଶ୍ରୀକାନ୍ତ ଆସି ଭୂମିଷ୍ଠ ପ୍ରଣାମ ଜଣାଇଲା । ନୀଳକଣ୍ଠ ଶୋଇଥିବା ଜାଗାରୁ ଉଠିପଡ଼ି କହିଲେ—ଥାଉ ବାବା ! ଭଲ ଅଛ ?

# ତିନି

ବର ପହଞ୍ଚିଲାବେଳକୁ ରାତି ଦଶ ବାଜିଯାଇଥିଲା । ସେତେବେଳକୁ ହିଁ ବାରେ ଲୋକଙ୍କର ଖିଆପିଆ ଶେଷ ହୋଇଯାଇଥିଲା । ଯେଉଁମାନେ ବା ରହିଯାଇଥିଲେ, ସେମାନେ ନିହାତି ବର ନ ଆସିବା ପର୍ଯ୍ୟନ୍ତ ଖାଇବାର ନୁହେଁ ବୋଲି ଖାଇ-ନଥିଲେ ।

ଖାଇବାର ଆୟୋଜନରେ କୌଣସି ତ୍ରୁଟି ନ ଥିଲା । ବିବିଧ ସାମଗ୍ରୀର ବ୍ୟବସ୍ଥା । ପଲଉ, ଲୁଚି, ସାଦାଭାତ, ରୁଟି, ମାଛ, ମାଂସ, ଖଟା ସମେତ ଦଶପ୍ରକାର ତରକାରି, ପାଞ୍ଚ ପ୍ରକାର ମିଠା—ସମସ୍ତଙ୍କ ପାଇଁ ଭୂରିଭୋଜନ—କି ଆମିଷ, କି ନିରାମିଷ ।

ଲାବଣ୍ୟ ପହଞ୍ଚିବା ପରେ ଲୀଳାବତୀଙ୍କ ଦାୟିତ୍ୱ କମିଯାଇଛି । ନୋହିଲେ ଏକା-ଲୋକ, ଘର ଭିତରର ସବୁ କଥା ଦେଖାଶୁଣା କରିବାବେଳକୁ ଜୀବନ ଗ୍ରାଣ୍ଡିଯିବା କଥା । ବାହାର କଥା ସିନା ପୁରୁଷ ଲୋକମାନେ ବୁଲାଇବେ; କିନ୍ତୁ ଘର ଭିତରେ ଯେ ପର ଆପଣାର ହୋଇ ପାଞ୍ଚଶହ ସ୍ତ୍ରୀଲୋକ । ତା' ଭିତରେ ପୁଣି ଦେଢ଼ ଶ' ଖଣ୍ଡେ ବିଧବା । ବ୍ରାହ୍ମଣ ଘରର ବିଧବାମାନଙ୍କ ଖାଇବାର ଯୋଉ ଜିଦ୍ଧା, ସେଥିରେ ଟିକିଏ ଏପାଖ ସେପାଖ ହୋଇଗଲେ ପ୍ରଳୟ କାଣ୍ଡ । ଲାବଣ୍ୟ ନିଜେ ଜଗିରହି ଖାଇବା ତଦାରଖ କରୁଥିଲା ।

ସନାମା' ଝିଙ୍କୀ, ତମେ ଆଉ ଖଣ୍ଡେ ମାଛ ନିଅ ।

ମଙ୍ଗୁଲି ଅପା, ତମେ ଆଉ ଦ'ଟା ରସଗୋଲା ନିଅ ।

ପାଢ଼ୀଘର ମାଉସୀ, ଆଉ ଟିକିଏ ଦହି ଖାଅ ।

ଖାଇବାରେ ସମସ୍ତେ ତୃପ୍ତ ।

ନୀଳକଣ୍ଠ ଏବଂ ତାଙ୍କ ପରିବାରଙ୍କ ବିଷୟରେ ଯେତେ ଯାହା ବିରୂପ ଆଲୋଚନା ହୋଇଥିଲା ସେ ସବୁର ପରିସମାପ୍ତି ଅବା ଘଟିଗଲା ସେ ବିପୁଳ ଭୋଜନରେ ।

ଭଣ୍ଡି ପର୍ଯ୍ୟନ୍ତ ଖାଇ ସମସ୍ତେ ହାକୁଟି ମାରୁଥିଲେ । କେହି ଅବା ଟିକିଏ ଗଡ଼ପଡ଼ ହେବାପାଇଁ ସୁବିଧାଜନକ ସ୍ଥାନ ଟିକିଏର ସନ୍ଧାନରେ ଥିଲେ । ହଠାତ୍ ଗୋଳ ଉଠିଲା—ବର ଆସିଗଲା । ବାଜା ଶୋଭାଯାତ୍ରାରେ ଆଖି କାନ ତଟସ୍ଥ । ଘର ଭିତରୁ ସବୁଯାକ ସ୍ତ୍ରୀଲୋକ ଦଉଡ଼ାଦଉଡ଼ି କରି, ପରସ୍ପର ପରସ୍ପର ସହିତ ଝୁଣ୍ଟାଝୁଣ୍ଟି, ଲୁଟାକୁଟି ହୋଇ ଦାଣ୍ଡ ପରସ୍ତ ପାରିହୋଇ ସାମନା ଦରଜାକୁ ଚାଲିଗଲେ । ଶୋଭା-

ଯାହା ଖୁବ୍ ପାଖ ହୋଇଗଲାଣି । ବ୍ରାହ୍ମଣ, ବାଲକ ପ୍ରଥମ ବରଣର ସରଞ୍ଜାମ ଧରି ପ୍ରସ୍ତୁତ ହୋଇଗଲେଣି । ବଡ଼ମାମୁଁ ଅର୍ଥାତ୍ ନୀଳକଣ୍ଠଙ୍କର ବଡ଼ ଶଳା ଚିତ୍କାର କରୁଛନ୍ତି—ଆରେ, ବାବୁଙ୍କୁ ଡାକ ।

ଦୋତାଲା ବାରଣ୍ଡାରେ ଠିଆହୋଇ ନୀଳକଣ୍ଠ ଶୋଭାଯାତ୍ରାର ସେ ପରିପାଟୀ ଦେଖୁଥିଲେ । ପାର୍ଟିଆରର ସାଜସଜ୍ଜା ତାଙ୍କ ମନକୁ ପାଉନଥିଲା । ଏଇଥିପାଇଁ ଏତେ କଥା ! ସମୁଦ୍ର ହେ, ଖୁବ୍ ଉଚ୍ଚଧରଣର ପାର୍ଟିଆର ପାଇଁ ଦଶହଜାର ଟଙ୍କା ନେଲ । ଏ କଥା କେହି ଜାଣିନାହାନ୍ତି; ଏପରିକି ଲୀଳାବତୀ ମଧ୍ୟ ନୁହେଁ । ନୀଳକଣ୍ଠଙ୍କ ହାତ ଏ ଟଙ୍କା ଦେଇଛି; କିନ୍ତୁ ତାଙ୍କ ଏ ଦେବାଟାକୁ ତାଙ୍କ ନିଜ ମନ ବି ସମର୍ଥନ କରିନାହିଁ । ତଥାପି ସେ ଦେଇଛନ୍ତି । ବଡ଼ଝିଅ ବାହାଘରର ପାର୍ଟିଆର କଥା ଭାବି ସେ ଗୋପନରେ ଏ ଆୟୋଜନ ପାଇଁ ରାଜି ହୋଇଛନ୍ତି; କିନ୍ତୁ ବିଶେଷ କ'ଣ ହେଇଛି ?

ସାମନାରେ ବ୍ୟାଣ୍ଡ ପାର୍ଟି । ତା ପଛକୁ ତିନୋଟି ଗେଟ୍ ଲାଇଟ୍ । ତା ପରେ ସଜ୍ଜିତ କାର୍ । ଅନେକ ଡେ'ଲାଇଟ୍ । ସାତଖଣ୍ଡ ବସ୍ । ତିନିଖଣ୍ଡ ଟ୍ରକ୍ । ଟ୍ରକ୍ ବସ୍ ତ ଖାଲି ତେଲ ଖର୍ଚ୍ଚରେ ଆସିଥିବ । ହ୍ୱାଇଁ ଉଚ୍ଚପଦସ୍ଥ ପୋଲିସ କର୍ମଚାରୀ କି ନା !

ନୀଳକଣ୍ଠ ଚାହିଁ ରହିଥିଲେ । ତଳେ ତାଙ୍କୁ ଖୋଜାପଡ଼ିଥିଲା । ଲାବଣ୍ୟ ଘରଆଡ଼େ ଖୋଜି ଉପରକୁ ଉଠିଆସିଲା । ବାରଣ୍ଡାରେ ଦେଖିଲା ବାପା ଏକା ଠିଆହୋଇଛନ୍ତି । ତାକୁ ଦେଖି ନୀଳକଣ୍ଠ ଚମକିପଡ଼ି ଉଠିଲେ—କିଏ ? କିଏ ସେ ?

ମୁଁ । ମୁଁ ।...

ଓ ! ଲାବଣ୍ୟ । ତଳକୁ ଯିବା ପାଇଁ ଡାକୁଛ ତ ! ମୁଁ ଠିକ୍‌ବେଳେ ଯାଇ ପହଞ୍ଚିବି ।

ଲାବଣ୍ୟ ଫେରିଆସିଲା । ଆଜି ସାରାଦିନ ତା ମନଟା କାହିଁକି ଭଲ ଲାଗୁନାହିଁ । ସାନଭଉଣୀର ବାହାଘରରେ ତାର ତ ସବୁଠୁ ବେଶି ଖୁସି ହେବାର କଥା; କିନ୍ତୁ ସେ ଖୁସିଟା ତାର ଗଲା କୁଆଡ଼େ ?

ଅନେକ ସ୍ୱପ୍ନ ନେଇ ସେ ଦୀର୍ଘ ଦିନ ପରେ ଆସିଥିଲା ବାପଘରକୁ । ଭାବିଥିଲା ବାପା ବୋଧହୁଏ ବାହାଘର କାମଟା ସାରିଦେଇ ଶାନ୍ତିର ନିଃଶ୍ୱାସ ମାରିବେ । ଆଉ ଝମେଲା କଣ ? ଟେନ୍‌ସନ୍ ବା କ'ଣ ରହିଲା ?

କିନ୍ତୁ ସେ ଆସି ଦେଖୁଚି କ'ଣ ? ବାରବର୍ଷ ତଳେ ଯୋଉ ବାପାଙ୍କୁ ସେ ରାଜଧାନୀରେ ଛାଡ଼ି ସ୍ୱାମୀଘରକୁ ଯାଇଥିଲା, ସେ ବାପା ତାର କାହାନ୍ତି ? ତାଙ୍କ ମୁହଁରେ ସେ ପ୍ରଫୁଲ୍ଲତା କାହିଁ ? ତାଙ୍କର ସେଇ ତେଜସ୍ୱୀ ମୂର୍ତ୍ତି, ନିରଳସ ଚଳ-ଚଞ୍ଚଳରେ ଅଦ୍ଭୁତ ପରିବର୍ତ୍ତନ ହେଇଚି ।

ଏହା କେମିତି ସମ୍ଭବ ହେଲା ? ନା, ଏ ଆଉ ଏକ ସଂସାର ? ଆଉ ଏକ ପୃଥିବୀ ?

ଲାବଣ୍ୟ କିଛି ବୁଝିପାରୁନଥିଲା । ଏତେ ଯେଉଁ ଅସୁବିଧା ଥିଲା, ତେବେ ଏ ବାହାଘର ହେଲା କାହିଁକି ? କେତକୀ ତ ବୁଢ଼ୀ ହୋଇଯାଇ ନଥିଲା । ଲାବଣ୍ୟ ଷୋଳ ବୟସରେ ବାହାହୋଇଥିଲା, କେତକୀ ତ ସେ ବୟସଠୁ ବର୍ଷେ ପଛରେ ଅଛି । ତାହାହେଲେ ?

ବର ଆସି ଦାଣ୍ଡଦୁଆରେ ପହଞ୍ଚିଗଲା । ନୀଳକଣ୍ଠ ଉପରୁ ତଳକୁ ଓହ୍ଲାଇ ଭଙ୍ଗ ଠେଲି କାର୍ ପାଖକୁ ଗଲେ ନିଜର କର୍ତ୍ତବ୍ୟ ତୁଲାଇବା ପାଇଁ । ପ୍ରଥମ ବରଣ ପରେ ବର ଆସି ସୁସଜ୍ଜିତ ଦଳଣରେ ନିର୍ଦ୍ଦିଷ୍ଟ ଗାଲିଗୃହନରେ ବସିଲା ।

ଚତୁର୍ଦ୍ଦିଗରେ ଆଲୋକ ସଜ୍ଜା । ଯେତେ ଅବା ଆଲୋକମାଳିନୀ ଅଯୋଧ୍ୟା । ମଫସଲ ହେଲେ ବି ଗାଁକୁ ବିଜୁଳି ଆଲୁଅ ଯାଇଛି । ନୀଳକଣ୍ଠଙ୍କର ପ୍ରଚେଷ୍ଟାରେ ହିଁ ଯାଇଛି ।

ବରର ଚେହେରାରେ ଖୁଣ ନାହିଁ । ସମସ୍ତେ ଦେଖି ବାହା-ବା କଲେ । ନାରୀମାନେ ହୁଳହୁଳି ଦେଉ ଦେଉ କେହି କେହି ବା ମନ୍ତବ୍ୟ କଲେ—ଏମିତି କାର୍ତ୍ତିକେୟ ପରି ବରକୁ ଝିଅଟା କ'ଣ ହେଲା ବା ? ଝିଅଟା ଯେ ଏ ବରର ପାସଙ୍ଗ-ଯୋଗ୍ୟ ନୁହେଁ—ମୋଟାମୋଟି ଏହା ହିଁ ହେଲା ଶେଷ ଆଲୋଚନା ।

ତା' ଭିତରେ ପୁଣି ବଡ଼ ଆଉ ସାନ ଜ୍ୱାଇଁଙ୍କ ଭିତରେ ତୁଳନାତ୍ମକ ଆଲୋଚନା ହେଲା ।

ସନାମା' ଖୁଡ଼ୀ କହିଲା—ସେଟା କ ଯାଇବ ଲୋ । ଯାଇବ କହିବ ସ୍ୱାକୁ ଇ । କ ଚୋଙ୍ଗା ଚେହେରା !

ମଙ୍ଗୁଳୀ ଆଈ କହିଲେ—ମୋ ଅଖି ତ ଏ ବର ଉପରୁ ଆଉ ଫେରୁ ନାହିଁ ଲୋ ! ଇଚ୍ଛା ହଉଚି, ମୁଁ ପୁଣି ଏ ବୟସରେ ଏଇ ବର ସାଙ୍ଗରେ ବେଦିରେ ବସିଯାଆନ୍ତି ।

ପାଢ଼ୀଘର ମାଉସୀ ଶେଷ ମନ୍ତବ୍ୟ କଲେ—ଏ ଜ୍ୱାଇଁ ସାଙ୍ଗରେ ବଡ଼ଜ୍ୱାଇଁ ଯେଉଁ ଯାଏନା, ସମସ୍ତେ ସ୍ୱାକୁ ହାକମ, ତାକୁ ଚପରାସୀ ବୋଲି କହିବେ । କେତକୀର ଭାଗ୍ୟ ! ଭାଗ୍ୟରେ ନ ଥିଲେ ରାଜପୁଅ ଭଳି ବର କାହାକୁ ଜୁଟେ ?

ଏଇ ବାହାଘରଟାକୁ ଦେଖି ସମସ୍ତେ ମୁଗ୍ଧ । ମା' ଲୀଳାବତୀ ମଧ୍ୟ । ଜ୍ୱାଇଁର ଚେହେରା ଦେଖି ତାଙ୍କ ଛାତି କୁଣ୍ଢେ ମୋଟ ହୋଇଯାଉଚି ।

ଆଉ ଲାବଣ୍ୟ ? ତା' ମୁହଁରୁ ହସ ଯେମିତି ମରିଯାଇଚି ? ସେ କଣ କେତକୀକୁ ଈର୍ଷା କରୁଚି ?

ନା ।

ସେ କ'ଣ ନିଜ ସ୍ୱର୍ଗକୁ ନିନ୍ଦା କରୁଚ ?

ନା ।

ତାହାହେଲେ କ'ଣ ପାଇଁ ସେ ବିମର୍ଷ ?

ବାପାଙ୍କର ବର୍ଷନ୍ତ ଚେହେରାଟା ଅସହ୍ୟ; ତା' ମୁଣ୍ଡରେ କଣ୍ଟା ଫୋଡ଼ିଲାଭଳି ଫୋଡ଼ିହେଉଚ । ବାପ ଅନ୍ତରର ଦୁଃଖ—ମନର ଅଭିମାନ ତାର ଚନ୍ତାଶକ୍ତିକୁ ଦଂଶନ କରୁଚ ।

ଏକଦା ଭୁବନେଶ୍ୱରରେ ଘଟିଥିବା ଏକ ଘଟଣା । କର୍ତ୍ତବ୍ୟନିଷ୍ଠ ନୀଳକଣ୍ଠ ଅଫିସରୁ ଫେର ବରିଗୃହରେ ବସି ଲବଣ୍ୟ ସହିତ ଗଳ୍ପଗୁଜବ କରୁଥିଲେ । ହଠାତ୍ ହଜାରେ ବିକ୍ଷୋଭକାରୀ ଛାତ୍ର 'ସ୍ଲୋଗାନ୍' ଦେଇ ଦେଇ ତାଙ୍କ ବସାଆଡ଼କୁ ଆସିଲେ । ତା' ପୂର୍ବରୁ ସଶସ୍ତ୍ର ପୋଲିସବାହିନୀ ଆସି ଫାଟକକୁ ଜଗି ସ୍ଥାନ ଦଖଲ କର ସାରଥାଏ ।

ଛାତ୍ରମାନଙ୍କର ଦାବୀ—ଆମେ ଦେଖା କରିବୁ ।

ପୋଲିସର ଉତ୍ତର—ନା ।

ଛାତ୍ରମାନଙ୍କର ଜିଦ୍—ହିଁ ।

ତୀବ୍ର ବାକ୍ୟ ବିନିମୟ । ଉତ୍ତେଜନା । ପୋଲିସ ସହିତ ଆସିଥିବା ମାଜିଷ୍ଟ୍ରେଟ ମାଇକ ଜରିଆରେ ସମବେତ ଛାତ୍ରମାନଙ୍କୁ ବେଆଇନ୍ ଜନତା ଘୋଷଣା କର ଚାଲିଯିବାକୁ କହିଲେ ।

ଛାତ୍ରମାନେ ଗଲେନାହିଁ ।

ପରର ପରସ୍ଥିତି—ଟିଏରଗ୍ୟାସ୍, ଲାଠି, ଗୁଳି, ପୋଲିସ ପ୍ରସ୍ତୁତ ।

ଅଫିସରୁ ଫେର ନୀଳକଣ୍ଠ ଗୃହରେ ଖାଇବା ପାଇଁ ଅପେକ୍ଷା କରିଥିଲେ । ଚା' କପ୍ ଆସିଲା; ମାତ୍ର କର୍ତ୍ତବ୍ୟର ଦୃପ୍ତ ଆହ୍ୱାନ । ଅସୀମ ମନୋବଳ ନେଇ ସେଦିନ ସେ ହଜାରେ ଉତ୍ତ୍ୟକ୍ତ ଛାତ୍ରଙ୍କର ସାମନାସାମନି ହୋଇଥିଲେ ।

ପୋଲିସ୍‌ବାହିନୀ ତଟସ୍ଥ । ଛାତ୍ରମାନେ ବିଶ୍ୱାସ କରିପାରିଲେ ନାହିଁ । ଘଣ୍ଟାଏ ଆଲୋଚନା । ଛାତ୍ରମାନେ ଫେରିଗଲେ ।

ସେଇ ବାପା ତ ! ଆଜି କାହିଁକି ପାଞ୍ଚଶହ ବରଯାତ୍ରୀଙ୍କର ସାମନାସାମନି ହୋଇପାରୁନାହାନ୍ତି !

ଘଣ୍ଟାକ ଭିତରେ ବରଯାତ୍ରୀଙ୍କର ଖିଆପିଆ ସରିଗଲା । ତା'ପରେ ବେଦିକର୍ମ ଆରମ୍ଭ । ବ୍ରାହ୍ମଣମାନେ ମନ୍ତ୍ର ଉଚ୍ଚାରଣ କରି କାମ ଆରମ୍ଭ କଲେ । ଚାରିଆଡ଼େ ଆଶ୍ୱସ୍ତର ତାରଗୁଡ଼ା ଫୁଟିଉଠିଲେ । କାହାରି ମନରେ ଆଉ ଉତ୍କଣ୍ଠା ନାହିଁ । ଦେଖଣାହାରୀଙ୍କ ଆଗ୍ରହ ବି କମିଗଲାଣି । ସମ୍ପୃକ୍ତ ବ୍ୟକ୍ତିମାନଙ୍କ ବ୍ୟତୀତ ଅନ୍ୟମାନଙ୍କର

ଆଉ ଦାୟିତ୍ୱ ବି କିଛି ନାହିଁ । କିଏ କେଉଁଠି ପଡ଼ି ଘୁଙ୍ଗୁଡ଼ି ମାରିଲାଣି—କିଏ ବା କେଉଁଠି ବସି ବସି ଢୁଳାଉଛି ।

ଦାଲାଣ ପାଖକୁ ଲାଗିଥିବା ଗେଷ୍ଟ୍ ରୁମ୍ ଭିତରେ ଶ୍ରୀକାନ୍ତ ଶୋଇଛି । ଧନଧନ ଧନଗଡ ଟ୍ରେନ୍‌ଯାତ୍ରା ପରେ ସେ ପୁରାପୁରି ଅବଶ ହୋଇପଡ଼ିଛି । ମଣିଷର ଟିକିଏ ତ ନିଦ୍ରା ଦରକାର । ସେ ଶୋଇପଡ଼ିଛି । ବର କନ୍ୟାଙ୍କର ଯଥାବିଧି ବେଦକାମ ସରିଗଲା ପରେ ସତ୍‌କୁ ବରଣ ପର୍ବ ଆରମ୍ଭ । ତା'ପରେ ପଡ଼ିବ ହାତଗଣ୍ଠି ।

ବାରିକ ଯାଇ ଶ୍ରୀକାନ୍ତକୁ ନିଦରୁ ଉଠେଇ ଆଣିଲା । ବେଦି ଉପରେ ତାର ଆବିର୍ଭାବ । ସାନସଢ଼ୁ ଧୋତି-ଯୋଡ଼ ଦେଇ ବଡ଼ସଢ଼ୁଙ୍କୁ ବନ୍ଦନା କଲେ ।

ପୁରୋହିତ କହିଲେ—କହନ୍ତୁ ବାବୁ, ମୋର ସାନ ଶାଳିକା ଆୟୁଷ୍ମତୀ କେତକୀଙ୍କୁ ଆପଣ ବିଭାହେବାରେ ମୁଁ ସମ୍ମତି ଦେଲି ।

ଶ୍ରୀକାନ୍ତ ସଂକ୍ଷେପରେ କହିଲା—ହଁ ।

ପୁରୋହିତ କହିଲେ—ହଁ ନୁହେଁ ବାବୁ, ପୂର୍ଣ୍ଣବାକ୍ୟ ଉଚ୍ଚାରଣ କରନ୍ତୁ ।

ଏଇ ସବୁ କହିବାକୁ ଲଜ୍ଜ ଲାଗୁଛି; ତଥାପି ଲୋକାଚାର । ଶ୍ରୀକାନ୍ତର ସ୍ୱମୁଖରୁ ଏଇ ବାକ୍ୟ ଉଚ୍ଚାରିତ ହେବାପରେ ପୁଣି ପୁରୋହିତ କହିଲେ, ଏଥର ସାନସଢ଼ୁଙ୍କୁ ମୁଦ୍ରିକା ବା ଅନ୍ୟ କିଛି ସ୍ୱର୍ଣ୍ଣ ଅଳଙ୍କାର ପ୍ରଦାନ କରନ୍ତୁ ।

ଶ୍ରୀକାନ୍ତ ଅସହାୟ ଭାବରେ ଖାଲି ଚାହିଁ ରହିଲା । ଏ ସବୁ ବିଷୟରେ ତାର ଅଭିଜ୍ଞତା ନାହିଁ । କେହି ବି ତାକୁ ଆଗରୁ କହିନାହାନ୍ତି । ବିଷମ ସମସ୍ୟା—କ'ଣ ସେ କରିବ ?

ତୁରନ୍ତ ନୂଆ ଅଳଙ୍କାର ଦିଆ ନ ଯିବାରୁ ବେଦି ପାଖରୁ ଶୁଭିଲାଣି—ଛୁଆ ଲୋ, ଏଇଟା କେମିତିକା ଭଦ୍ରଲୋକ ! ଲୁଗା ଯୋଡ଼ ନେଲା, ମୁଦଟେ ଦଉନାହିଁ । ଏଡ଼େ ବଡ଼ ଚାକିରି କରିଛି, ଏଡ଼େ କୃପଣ ?

ସତରେ କ'ଣ ଏଇଟା କୃପଣତାର ଚିହ୍ନ ?

ନା, ତା ନୁହେଁ । ବେଦି ପାଖର ଆଲୋଚନା ଶୁଣି ଲାବଣ୍ୟର ମୁହଁ କଳା ହୋଇଗଲାଣି । ସେ ତା' ନିଜ ହାତରୁ ମୁଦଟାଏ କାଢ଼ି ଦେଇଦିଅନ୍ତା; ମାତ୍ର ପୁରୁଣା ଜିନିଷରେ କାମ ଚଳିବ ନାହିଁ । ହଠାତ୍ ନୂଆଟାଏ ବା ମିଳିବ କେଉଁଠୁ ?

ଲଜ୍ଜା ଅପମାନରେ ସେ ଭାଙ୍ଗିପଡ଼ିଲା । ସେ ବୁଲିପଡ଼ିଲା ଘର ଭିତରକୁ ଧାଇଁଲା ।

ସାମନାରେ ବାପା ତା ହାତକୁ ନୂଆ ମୁଦଟାଏ ବଢ଼େଇ ଦେଇ କହିଲେ —ନେଇଯାଅ ମା, କାମ ଚଳେଇଦେ ।

ବାପା ନା ସ୍ୱର୍ଗର ଦେବଦୂତ ! କୃତଜ୍ଞତାରେ ଲାବଣ୍ୟ ଭାଙ୍ଗିପଡ଼ିଲା । ତା' ଆଖିରୁ ଟପ୍‌କିନି ଲୁହ ବିନ୍ଦୁଏ ଝରିପଡ଼ିଲା ତଳକୁ । ନେବ ବା ନେବନାହିଁ ସେ

ବସ୍ତୁର ପାଇଁ ସମୟ ହିଁ ନଥିଲା । ବାପାଙ୍କ ହାତରୁ ମୁଦଟାକୁ ନେଇ ସେ ବେଦ ପାଖକୁ ଦଉଡ଼ିଯାଇ ଶ୍ରୀକାନ୍ତକୁ ବଢ଼େଇଦେଲା । ତଳକୁ ମୁହଁପୋଛ ବସିଥିବା ଶ୍ରୀକାନ୍ତଙ୍କ ମୁହଁରେ ହସ ଦେଖାଦେଲା । ସେ ଚଟ୍‌କିନ ପ୍ଲାଷ୍ଟିକ କେସରୁ ମୁଦଟାକୁ କାଢ଼ି ସାନ ସତ୍ୟ ଆଙ୍ଗୁଳରେ ପିନ୍ଧାଇଦେଇ ବେଦରୁ ଉଠି ଏକାନଃଶ୍ୱାସରେ ଧାଇଁଗଲା ଭିତରକୁ—ପୁଣି ସେଇ କୋଠରୀକୁ ଯେଉଁଠି ତା' ପାଇଁ ବିଛଣା ହୋଇଥିଲା ।

ଲବଣ୍ୟ ରହିଗଲା ବେଦ ପାଖରେ । ସ୍ୱା'ପରେ ହାତଗଣ୍ଠି ପଡ଼ିବ । କିଏ ଜଣେ ବାଜାବାଲାଙ୍କୁ ଇଙ୍ଗିତ ଦେଲା ଜୋରରେ ବାଜା ବଜେଇବା ପାଇଁ ।

କନ୍ୟା ବେଦକୁ ଆସିବ । ଏଇଟା ହିଁ ସବୁଠୁ ଗୁରୁତ୍ୱପୂର୍ଣ୍ଣ ମୁହୂର୍ତ୍ତ । ଏଇ ମୁହୂର୍ତ୍ତରେ କନ୍ୟା ବାପ-ଗୋତ୍ରରୁ ଅନ୍ୟ ଗୋତ୍ରକୁ ଚାଲିଯିବ । ଏଇ ଲଗ୍ନଟି ପାଇଁ ସମସ୍ତେ ଉତ୍କଣ୍ଠାର ସହିତ ଅପେକ୍ଷା କରିଥାନ୍ତି ।

ମାତ୍ର ହଠାତ୍ ଏକ ଘଟଣା ବା ଦୁର୍ଘଟଣା ଘଟିଗଲା । ହାତଗଣ୍ଠି ପଡ଼ିବାପାଇଁ କନ୍ୟା ବେଦକୁ ଆସିବା ପୂର୍ବରୁ ବରକର୍ତ୍ତା ଦଲାଣରେ ବସି କନ୍ୟାକର୍ତ୍ତାଙ୍କୁ ଡକାଇ ପଠାଇଲେ । ନୀଳକଣ୍ଠ ଆସିବା ପରେ ସେ କହିଲେ—ବୁଝିଲେ ସମୁଦି, ଆପଣ ତ ଅଙ୍ଗୀକାର କରିସାରିଛନ୍ତି; ବାକି କିଛି ନାହିଁ । ସେଇ କଥାଟା ସର୍ବସମକ୍ଷରେ ଅଗ୍ନିକୁ ସାକ୍ଷୀ ରଖି କହିଦେବେ ।

ନୀଳକଣ୍ଠ ସମୁଦିଙ୍କର କଥାର ତାତ୍ପର୍ଯ୍ୟ ବୁଝିପାରିଲେ ନାହିଁ । ତାଙ୍କର ହୃଦୟଙ୍ଗମ କରାଇବା ପାଇଁ ସମ୍ବନ୍ଧ ଆଉରି ସ୍ପଷ୍ଟଭାବରେ କହିଲେ—କାର୍ ବା ତତ୍‌ମୂଲ୍ୟ ଟଙ୍କା ଦେବାପାଇଁ ଆପଣ ତ ରାଜିହୋଇଛନ୍ତି । ସେଇଟାକୁ ମାସକ ମଧ୍ୟରେ ପୂରଣ କରିବା କଥା ସର୍ବସମକ୍ଷରେ କହିବେ । କଥାର ଯଦି କୌଣସି ଖିଲାପ ହୁଏ, ଏଇ ଯେ ବୋହୂ ଆମେ ନେଇଯିବୁ, ସେ ଆଉ କେବେ ଆପଣଙ୍କ ଘର ଦୁଆର ମାଡ଼ିବ ନାହିଁ ।

ଏ ଭଳି ସାନ ପ୍ରସ୍ତାବ ଶୁଣି ନୀଳକଣ୍ଠଙ୍କ ମନରେ କି ଭାବନା ଜାଗ୍ରତ ହେଲା ? ସେ ବାକ୍‌ଶକ୍ତି ହରେଇ ବସିଲେ ଯେମିତି । ମୁଣ୍ଡ ତାଙ୍କର ନଇଁଗଲା । ଆଖି ତଳକୁ କରି ନିର୍ଜୀବ ପିଣ୍ଡଟେ ଭଳି ସେ ବସିରହିଲେ ।

ବରପିତାମାନେ କ'ଣ ମାନବରୂପୀ ଦାନବ ? ଆଉ କନ୍ୟାପିତା—ପୂଜାର ବଳି ? ହନ୍ତବ୍ୟ ପଶୁ ?

ପାଖରେ ଥିଲା ଲବଣ୍ୟ । ସେ ଆଉ ସମ୍ଭାଳି ପାରିଲା ନାହିଁ । ଅନେକ ସାହସ ସଞ୍ଚୟ କରି ସେ କହିଉଠିଲା—ବାପା, ଏ ବିବାହ ବନ୍ଦ କରନ୍ତୁ ।

ତାର ଏଇ କଥା ପଦକରେ ହଠାତ୍ ଯେମିତି ବିସ୍ଫୋରଣ ଘଟିଗଲା । ବରକର୍ତ୍ତା ରାଗରେ ସତେ ଛିନ୍ନଖଣ୍ଡ ହୋଇଗଲେ ଓ ଏକଖଣ୍ଡ ଯାଇ ସହସା ପଡ଼ିଲା ବେଦି ଉପରେ ।

ଆନନ୍ଦ ! ଏ ବିଶ୍ୱଘର ଏଠିକରେ ଆଉ । ତୁ ବେଦି ଉପରୁ ଉଠି ଆ ।

ହରମୋହନ ଗର୍ଜନ କରି ଆନନ୍ଦର ହାତ ଟାଣି ତାକୁ ବେଦି ଉପରୁ ଉଠାଇ ଆଣିଲେ । ଆଉ ବିଚରା ଆନନ୍ଦ । ହଠାତ୍ ବାପାଙ୍କର ଏ ରୁଦ୍ରମୂର୍ତ୍ତିର କାରଣ କିଛି ବୁଝିପାରିଲା ନାହିଁ । ଯାହାହେଲେ ବି ଉଚ୍ଚପଦସ୍ଥ ପୋଲିସ୍ ଅଫିସର୍ । ବାପାଙ୍କର ଏ ପ୍ରକାର କାମକୁ ମନଭିତରେ ସେ ସମର୍ଥନ କରିପାରିଲା ନାହିଁ ।

କିନ୍ତୁ ତାର ବା ଗୃସ୍ କଣ ?

ଆମ ଦେଶରେ ବରବେଣୀ ଯୁବକମାନେ ସାଧାରଣତଃ ଅଭିଭାବକମାନଙ୍କର ହାତମୁଠାରେ ଥାଆନ୍ତି । ବହୁ କମ୍ ଯୁବକ ଏଇଭଳି ପରିସ୍ଥିତିମାନଙ୍କରେ ନିଜର ଇଚ୍ଛାକୁ ଜାହିର କରିପାରନ୍ତି । ଆନନ୍ଦ ପୁରାପୁରି ବାପାଙ୍କର କର୍ତ୍ତୃତ୍ୱାଧୀନ ।

ଲୋକହସା କଥା । ଅପମାନଟା ବି କମ୍ ନୁହେଁ । ଗୋଟାଏ ଝିଅର ଏଇ ଔଦ୍ଧତ୍ୟ ! ହରମୋହନ ସହନ୍ତେ ବା କେମିତି ?

ଝିଅର ଏଇ ବାଚାଳତା ପାଇଁ ନୀଳକଣ୍ଠ କ୍ଷମା ମାଗିଲେ । ବିବାହ କାମ ଘଣ୍ଟାଏ ବନ୍ଦ ରହିବା ପରେ ପୁଣି ଗଢ ଢନଟାବେଳକୁ ଆରମ୍ଭ ହେଲା; କିନ୍ତୁ କେତକୀ କାହିଁ ?

ବାପାଙ୍କୁ ବାରମ୍ବାର ଯେଭଳି ଅପମାନ ଦିଆଯାଇଛି, ଏ ଅପମାନ କ'ଣ ତାର ନୁହେଁ ? ସେ ଏକାଟିଆ ଦୋତାଲା ଉପରକୁ ଉଠିଯାଇ ଶୋଇ ଶୋଇ କାନ୍ଦୁଛି ।

ସେ ଯଦି ବାହା ନ ହୁଏ, କ୍ଷତି କ'ଣ ହେବ ? ଏଇଭଳି ଏକ ନିଷ୍ପତ୍ତି ନେବା ପାଇଁ ଯେଉଁ ସାହସ ଆଉ ମନର ବଳ ଦରକାର, ତାହା କିଏ ଦେବ ? ନାରୀ ଲାବଣ୍ୟ; କିନ୍ତୁ ସେ ଯେ ସମ୍ପୂର୍ଣ୍ଣ ଭୟତ୍ରସ୍ତା—ସେ ବି କୋଉଠି ଯାଇ ଶୋଇ ଶୋଇ କାନ୍ଦୁଛି ।

ମା' ଆସି କାନ୍ଦି କାନ୍ଦି କହିଲେ—କେତୁ, ମୋତେ ଏମିତି ଲୋକହସା କରିବାଠାରୁ ବରଂ ଟିକିଏ ବିଷ ଦେଇଦେ । ମୁଁ ମରିଯାଏ ।

କେତକୀ ଛୋଟ ପିଲାଟି ଭଳି କର୍ଲିକର୍ଲି ହୋଇ କାନ୍ଦିଉଠିଲା ।

ମା ! ମା !

ମା'ଙ୍କର ସ୍ୱର ଉଚ୍ଚରୁ ଉଚ୍ଚତର ହେଉଛି ।

ବାଉକାଣୀ ଆସି ଉପସ୍ଥିତ ହେଲା ।

—ମା' ଡେରି ହେଉଚି, ଦେଇଙ୍କୁ ପଠାଅ !

ନାଃ ! ଆଉ ହେବନାହିଁ । କେତକୀ ଉଠିଆସିଲା । ପରିସ୍ଥିତି ଆଜି ଭିନ୍ନ । ସମାଜ ଆହୁରି ନିଷ୍ଠୁର । ଏ ସମାଜରେ ନାରୀ ପାଇଁ କଣ କ୍ଷମା ଥାଏ ? ନାରୀର କ'ଣ କିଛି ସ୍ଥିତି ଥାଏ ? ପ୍ରତିଷ୍ଠା ଥାଏ ? ସମାଜ ଗଢ଼ିଆସିଛି ସେଇ ଚିରାଚରିତ ପ୍ରଥାରେ—ପୁରୁଷର ଆଧିପତ୍ୟ ପାଖରେ ନାରୀ ଏକ ନିର୍ଜୀବ ଖେଳଣା । ନାବାଳିକା କେତକୀ ଓଢ଼ଣା ଭିତରେ ମୁହଁ ଲୁଚେଇ ବେଦି ଉପରକୁ ଆସିଲା । ବାଦ୍ୟର ସ୍ୱର ହେଲା ଆହୁରି ତୀବ୍ର । ଏକସମୟରେ ଉଭୟ କୁଳର ପୁରୋହିତ ଉଚ୍ଚାରଣ କରି ଉଠିଲେ—ଯଥା ନଳସ୍ୟ ଦମୟନ୍ତୀ, ଯଥା ରାବଣସ୍ୟ ମନ୍ଦୋଦରୀ···

ରାତି ପାହିଆସୁଥିଲା ।

# ଗୃହ

ପରଦିନ ଉପରଓଳି ଘଣ୍ଟା ସରକି ବରକନ୍ୟା ଓ ବରଯାତ୍ରୀଦଳ ବିଦା-ହେଲେ । ସେ ଦିନଟାଯାକ ଲବଣ୍ୟ ମୁହଁ ଲୁଚେଇ ରହିଚ । ଯାନଭଙ୍ଗଣୀ ବିଦାହବାବେଳେ ବି ତାକୁ ମନଖୋଲି ବିଦାୟ ଦେଇପାରିନାହିଁ । ଅଖି ଅଶ୍ରୁ ଟଳଟଳ ହେଲେ ସ୍ୱତଃ ମୁହଁ ବନ୍ଦ ହେଇଯାଏ । ଲବଣ୍ୟର ଠିକ୍ ସେଇ ଅବସ୍ଥା ହେଇଚି । ମୁଣ୍ଡ ଭିତରେ ଯନ୍ତ୍ରଣା ତାର ବଢ଼ିଚି ବରଂ, କମିନାହିଁ ।

ବରକନ୍ୟା ବିଦାହେଇଯିବା ପରେ ପରେ ହିଁ ଅଧେ ଲୋକ ବିଦାହେଇ ଯେ ଯାହା ଘରକୁ ଚାଲିଗଲେ । ଘର ଭିତରେ ରହିଲେ ଆଉ ଏକ-ଚତୁର୍ଥାଂଶ କୁଣିଆ । କେହି ବା କାଲି ସକାଳେ ଯିବେ, ଆଉ କେହି ବା ଦୁଇଦିନ ପରେ; କିଛି ଯିବେ ସାତ ଦିନ ପରେ ।

ଶ୍ରୀକାନ୍ତ ପନ୍ଦରଦିନ ଛୁଟି ନେଇ ଆସିଚି । ଆସିବାବେଳେ ଟ୍ରେନ୍‌ରେ ଆସିଚି—ଯିବାବେଳେ ଯିବ ଏରୋପ୍ଲେନ୍‌ରେ । କଟକରେ ଘରେ ତିନି ଚାରି ଦିନ ରହି ସେ ଯିବ । ଶ୍ୱଶୁରଘରେ ଚାରି ପାଞ୍ଚ ଦିନ ରହଣି । ତା'ର ଯେ ମଫସଲରେ ରହିବାକୁ ଏକାନ୍ତ ଇଚ୍ଛା, ତାହା ନୁହେଁ; ମାତ୍ର ଲବଣ୍ୟ କ'ଣ ଚାରିପାଞ୍ଚ ଦିନ ନରହି ଯାଇପାରିବ ?

ବିବାହ ରାତିର କ୍ଳାନ୍ତି ସମସ୍ତଙ୍କୁ ଘାରିଥିଲା । ତେଣୁ ପର ଦିନର ରାତି ନିଦ୍ରେଳ ଭାବରେ କଟିଗଲା ।

ତା' ପରଦିନ ସକାଳେ ଜେଜେମା' ହିଁ ସେ ପ୍ରଶ୍ନ ଉତ୍ଥାପନ କଲେ । ଅତି ପ୍ରତ୍ୟୁଷରୁ ଉଠି ନିତ୍ୟକର୍ମ ସ୍ନାନାଦି ଶେଷକରି ମନ୍ଦିରରେ ଦେବଦର୍ଶନ ସାରି ଫେରି-ଆସି ଚାହା ଆସରରେ ହିଁ ସେ ଲୀଳାବତୀଙ୍କୁ ଲକ୍ଷ୍ୟକରି କହିଲେ—ହଇ ଲୋ ବୋହୂ; ଲବଣ୍ୟର କ'ଣ ହେଇଚି । ବାହାଘର କାହିଁ କେବେଠୁ ହେଲାଣି, ପିଲାଟିଆ ମୁହଁ ଏ ପର୍ଯ୍ୟନ୍ତ ଦିଶିଲାନି । କଥା କ'ଣ କହିଲୁ ?

ଲୀଳାବତୀ କ'ଣ ବା କଥା ଜାଣନ୍ତି ? ସେ ବି ଏଇ ଭାବନାରେ ବୁଡ଼ିଗଲେ । ସତ ତ ! କଣ ହେଲା ? ଲବଣ୍ୟ କ'ଣ ମା' ହବନି ?

ବିବାହ ପରେ ଆଲୋଚନା ପାଇଁ ଆଉ ତ କିଛି ବିଷୟବସ୍ତୁ ନଥିଲା । ଯା' ହଉ ସମସ୍ତଙ୍କ ପାଇଁ ଆଲୋଚନାର ଏକ ଖୋରାକ ମିଳିଗଲା ।

ଲବଣ୍ୟ ହେଲା ସମସ୍ତଙ୍କ ଦୟାର ପାତ୍ରୀ ।

ବେଶ୍ୟା !

ହତଭାଗୀ !

ପୋଡ଼ାମୁହିଁ !

ଏଇ ଆଲୋଚନା ଲାବଣ୍ୟ କାନକୁ ଗଲା । ତା'ର ଦୁଃଖ ଆହୁରି ବଢ଼ିଗଲା । କାହା ସାଙ୍ଗରେ କଥାବାର୍ତ୍ତା କରି ସେ ଆଶ୍ୱାସନା ପାଇବ ? ମା ? କିନ୍ତୁ ତାଙ୍କର ଅବସ୍ଥା ଯାହା, ତାଙ୍କ କଥା ବା ବୁଝିବ କିଏ ? ସେ ପୁଣି ଓଲଟି ଝିଅକୁ ଆଶ୍ୱାସନା ଦେବେ ?

ଆଉ ବାପା ? ତାଙ୍କ ମନଟା ଦୁଃସହ-ଝଡ଼ରେ ଆକ୍ରାନ୍ତ । ସ୍ନେହର ପ୍ରତିମା ଲୁହର ପ୍ରତିମାରେ ପରିଣତ ହୋଇଯାଇଛୁ । ତାଙ୍କର ସେ ମାନସିକ ଦୃଢ଼ତା ବଦଳରେ ଆଜି କ'ଣ ଦେଖୁଚି ଲାବଣ୍ୟ ?

ସତରେ, ବାପା ବୋଲି ଦୁଃଖ ଲାଘବ କରିବାକୁ ସେ ତ ତାଙ୍କ ପାଖକୁ ଦଉଡ଼ିଯାଇପାରୁନି । ଆଗପରି କହିପାରୁନି—ବାପା, ଦୁଃଖଟା ତ ସୃଷ୍ଟି ହୋଇଚି ଚିନ୍ତାଶକ୍ତି-ପୂର୍ଣ୍ଣ ମଣିଷ ପାଇଁ । ତମେ ଦୁଃଖ କରନା ବାପା ! ତମେ ଉଠି ବସିଲେ ସବୁ ଠିକ୍ ହୋଇଯିବ ।

ତା'ର ଆଦରର ମଣିଷ ଶ୍ରୀକାନ୍ତ ! ନିର୍ଲିପ୍ତ ମଣିଷ—ମଣିଷର ଛଳ-ଚାତୁରୀ ବିଷୟରେ ସେ ସଂପୂର୍ଣ୍ଣ ଅନଭିଜ୍ଞ । ଏକା ଏକା ସେ ବସିରହିଛୁ । ତା' ମନ ବି ଭାରାକ୍ରାନ୍ତ । ହୁଏତ ଲାବଣ୍ୟର କର୍ତ୍ତବ୍ୟ—ତା' ପାଖକୁ ଯିବା, ଗପକରି ତା' ମନକୁ ସରସ କରିବା; କିନ୍ତୁ ତାହା ହୋଇପାରୁଚି କୋଉଠି ?

ବାପଘରକୁ ଝିଅ ଯୋଉ ଆନନ୍ଦଟିକକ ପାଇବା ପାଇଁ ଆସେ, ତାହା ହଜିଯାଇଚି ଯେପରି କେଉଁ ଏକ ଅପଦେବତାର ଚକ୍ରାନ୍ତରେ ।

ବିବାହିତା-ଭିନ୍ନଗୋଷ୍ଠୀ ହୋଇଥିଲେ ବି ଶ୍ୱଶୁରଘର ବିଷୟରେ ଲାବଣ୍ୟର ଅଭିଜ୍ଞତା ବିଶେଷ ନାହିଁ । ବିଭାଘରର ବାରବର୍ଷ ଭିତରେ ସେ ବା ଶ୍ୱଶୁରଘରେ ରହିଲା କେତେ ଦିନ ! ସେଇ ବାହାଘର ପରେ ଦୁଇମାସ ଯାହା ରହିଛୁ । ବାହାଘରର ଦୁଇମାସ ଭିତରେ ଶ୍ରୀକାନ୍ତ ଆଇ. ଏ. ଏସ୍. ପରୀକ୍ଷାରେ ସର୍ବଭାରତୀୟ ସ୍ତରରେ ତୃତୀୟ ସ୍ଥାନ ଲାଭକରିବାର କୃତିତ୍ୱ ହାସଲକରି ଟ୍ରେନିଂ ନେବାକୁ ଚାଲିଯାଇଥିଲା । ତା' ପରେ ପରେ ହିଁ ଲାବଣ୍ୟ ଚାଲିଯାଇଥିଲା ଭୁବନେଶ୍ୱର—ବାପାଙ୍କ ପାଖକୁ । ଟ୍ରେନିଂ ପରେ ଉଭୟଙ୍କର ଦିଲ୍ଲୀଯାତ୍ରା, ଶ୍ରୀକାନ୍ତର ଫରେନ୍ ସର୍ଭିସ । ଦିଲ୍ଲୀରେ ଲାବଣ୍ୟ ଦେଖିଚି ସେଠାରେ ନାରୀମାନଙ୍କର ସ୍ୱାଧୀନତା—ଆତ୍ମନିର୍ଭରଶୀଳତା । ସେଇମିତି ତା' ଜୀବନର ଧାରାକୁ ଗଢ଼ିନେବାକୁ ସେ ଚେଷ୍ଟା କରିଚି । କୌଣସି କ୍ଷେତ୍ରରେ

ହଟିଯିବାର ପାଣୀ ସେ ନୁହେଁ । କାହାର କଥାରେ ମୁହଁ ଶୁଖେଇବା ତା କୋଷ୍ଠୀରେ ନ ଥିଲା; କିନ୍ତୁ ଆଜି ତା'ର ଏ କି ଅବସ୍ଥା !

ସେଇ ଏକ ଅଧମ ମାତୃସୁଲଭ ଚିନ୍ତା ତାକୁ ଆଜି ଘାରିଯାଉଛି । କୋଳରେ ସନ୍ତାନ ଦରକାର । ସନ୍ତାନର ଅଭାବ ତାକୁ ବ୍ୟତିବ୍ୟସ୍ତ କରିପକାଉଛି । ଜୀବନର ଅଠେଇଶ ବର୍ଷ ଭିତରେ ଏ ଭାବନା କୌଣସି ଦିନ ତା ମନକୁ ଛୁଇଁ ନଥିଲା । ହଠାତ୍ ଜେଜେମା' ଆଜି ଏ କଥା ଉଠେଇଲେ କାହିଁକି ?

ଜେଜେମା' ! ଲବଣ୍ୟର ଭାରି ରାଗ ହେଉଥିଲା । ସେ ମରିବାପୂର୍ବରୁ ଜ୍ୱାଇଁ ଦେଖିବେ ବୋଲି ତ ଲବଣ୍ୟ ବିଭାହୋଇଥିଲା । କାହିଁ, ତା ବିବାହ ପରେ ସେ ତ ମଲେନାହିଁ ! ପୁଣି ତାଙ୍କରି ପାଇଁ କେତକୀର ବିବାହ ଯେ ବାପା କରେଇ-ଦେଲେ, ଏ ଖବର ସେ ଏଠି ସଂଗ୍ରହ କରିସାରିଥିଲା । କେତକୀର ବରକୁ ସେ ତ ଦେଖିଲେ । ଏଥର ଯଦି ନ ମରନ୍ତି—ପୁଣି କିଏ ତାଙ୍କ ଆଶାର ଶିକାର ହେବ ?

ଲବଣ୍ୟର ଆଜି ମନେପଡ଼େ—ଏଇ ଜେଜେମା' କୋଳରେ ବସି ସେ କେତେ ଗପ ନ ଶୁଣିଚି ! ଏଇ ଜେଜେମା' ବାପାଙ୍କୁ କେତେ ଭଲ ନ ପାଆନ୍ତି ! ବାପା ଅଫିସରୁ ନ ଫେରିବାଯାଏ ବୁଢ଼ୀ କ୍ୱାର୍ଟର ପିଣ୍ଡାରେ ବସିରହି ଉତ୍କଣ୍ଠାର ସହିତ ଅପେକ୍ଷା କରିଥାନ୍ତି ।

ମା'—ପୁଅ । ପୃଥିବୀବକ୍ଷରେ ଯେତେ ଯେତେ ସମ୍ପର୍କର ଜାଲ ବିସ୍ତାହୋଇଚି ତା ଭିତରେ ସମ୍ପର୍କର ଏଇ ଜାଲଟା ହିଁ ସବୁଠୁ ଦୃଢ଼ । ମା' ହେବା କେଡ଼େ ଭାଗ୍ୟର କଥା ! ଆଉ ଯେଉଁମାନେ ମା' ନ ହୋଇପାରନ୍ତି ସେମାନଙ୍କ ଜୀବନ ଶୁଖିଲା ମରୁଭୂମି । ସେଠି ସ୍ନେହର ଉତ୍ସ କ୍ରମଶଃ ନିଶ୍ଚିହ୍ନ ହୋଇଯାଏ ।

କାହିଁକି ଏମିତି ହୁଏ ?

ଲବଣ୍ୟ ଭାବୁଥିଲା—ସଂସାରରେ କ'ଣ ମଣିଷର ଅଭାବ ? ନିଜର ନ ଥାଉ, ଅନ୍ୟର ପିଲାକୁ କିଏ ନିଜର କରିହୁଏନା !

ଏଇ ତ ସନାମା' ଝିଅ୍ଟି; ସାତଟି ପୁଅର ମା । ସାନପୁଅର ବୟସ ପାଞ୍ଚ । ଲବଣ୍ୟ ଏଠି ପହଞ୍ଚିବାରୁ ସେ ପିଲାଟା ତା'ରି ପଛେ ପଛେ ଲାଗିରହିଚି; ମାତ୍ର ଦୁଇ ଦିନ ରହିଣି ଭିତରେ ସେ ପିଲାଟା ପ୍ରତି ଲବଣ୍ୟର ଏକପ୍ରକାର ମାୟା ଲାଗିଗଲାଣି । ମଫସଲର ପିଲାଟା କେତେ କଥା ନ କହୁଚି !

ଏଇ ସକାଳେ ସେ କହୁଥିଲା—ବୁଝିଲୁ ନାନି ! ମୋ ମା ନା, ତୋ ନାଁରେ କାଲି ରାତିରେ କେତେ କଥା କହୁଥିଲା ।

ଲବଣ୍ୟ ଆଶ୍ଚର୍ଯ୍ୟ ହୋଇ ତା ମୁହଁକୁ ଚାହିଁଥିଲା, ଆଉ ପଚାରିଥିଲା—କହିଲୁ ବାବୁ, କିଣ କିଣ ସବୁ ତୋ ମା' କହୁଥିଲା ?

ବାପୁ କହୁଥିଲା—ରୁ କୁଆଡ଼େ ନଷ୍ଟମୀଗୁଡ଼...ରୁ କୁଆଡ଼େ ପୋଡ଼ାମୁହିଁ...

ଲାବଣ୍ୟର ଆଖି ସଜଳ ହେଲା । ଶ୍ରେଷ୍ଠ ପିଲାଟା—ଆଉ କେତେ ବା କହି- ପାରନ୍ତା ! ଯେତିକ କହିଲା ସେତିକର ଅର୍ଥ ଢେର୍ ।

ସଂସାରରେ ପିଲାର ଅଭାବ ନାହିଁ । ତଥାପି ମଣିଷ ଲୋଡ଼େ ନିଜର ସନ୍ତାନ; ଯେ କି ପୁତ୍ ନାମକ ନରକରୁ ତାକୁ ଉଦ୍ଧାର କରିବ; ଯେ କି ଅସହାୟ ଅବସ୍ଥାରେ ତାର ସହାୟକ ହେବ । ଏଇ ଆଶା ନେଇ ମଣିଷ ଘରସଂସାର କରେ, ଏଇ ଆଶା ନେଇ ଝିଅ ଶାଶୁଘରକୁ ଯାଏ ।

ସେ ଆଶା ପରିପୂର୍ଣ୍ଣ ନହେଲେ ଝିଅପିଲାକୁ ବାର ମୁହଁରୁ ବାର କଥା ଶୁଣିବାକୁ ପଡ଼େ । ଆଉ କଏ କହେ, ସେଇ ଝିଅପିଲା ହିଁ କହନ୍ତି । ଝିଅପିଲାଙ୍କର ଶତ୍ରୁ କିଏ ପୁରୁଷପିଲା ? ନା, ସେଇ ଝିଅପିଲା ହିଁ ଝିଅପିଲାଙ୍କର ଶତ୍ରୁ—ଖାଲି ଯାହା ବୟସର ତାରତମ୍ୟ । ଗୁଳିଏ ପାରହୋଇଗଲା ପରେ ନାରୀ ଯେମିତି ସର୍ବଜ୍ଞାନ୍ତା ହୋଇଯାଏ । ଯୋଉ ଷ୍ଟେସନ ଦେଖି ନଥିବା ସ୍ତ୍ରୀଲୋକ ସୋନପୁର ଷ୍ଟେସନ ବିଷୟରେ ଗଳ୍ପ କରେ ।

ସ୍ୱ' ଆସରରେ ଗଳ୍ପଟା ହିଁ ଜମିଥିଲା ବେଶ୍ । ଲୀଳାବତୀଙ୍କର ଅସହ୍ୟ ହେଲା । ଯେତେହେଲେ ଲାବଣ୍ୟ ତାଙ୍କର ଝିଅ ତ—ତାକୁ ନେଇ ଏ ଯୋଉ ବିଶ୍ରୀ ଆଲୋଚନା । ଏ ଆଲୋଚନାରେ ତାଙ୍କ ଶାଶୁ ହିଁ ଇନ୍ଧନ ଯୋଗାଉଥିଲେ ।

ସରୁର ପାରହୋଇଗଲା ପରେ ମଣିଷର ମନରେ ଆଉ ଖରଯାମ୍ୟ ରହେନା । ବାଳସୁଲଭ ଚପଳତାର ମନ-ସ୍ତର ଉଠେ ପଡ଼େ ।

ବୁଢ଼ୀ କହୁଥିଲେ—ଲାବଣ୍ୟ ହାତରୁ ଜଳସ୍ପର୍ଶ ନିଷେଧ । ଏକେ ତ ସେ ବିଲାତ ଯାଇ ସାଇବଙ୍କ ହାତରାନ୍ଧଣା ଖାଇ ଜାତି ହରେଇଛି, ପୁଣି ତା' ସାଙ୍ଗକୁ ବାଂଝ ହେବାର ଦୋଷ । ତେଣୁ ସକାଳେ ସେ ଫରୁଆ ଜାରି କରିଦେଲେ :

—ବୋହୂ ଲୋ, ଲାବ ଯେମିତି ରୋଷାଇକୁ ନଯାଏ । ସାଇବ ଦେଶରେ ବୁଲି ବୁଲି ଜାତିପାତ କରି ଆସିଛି, ରୋଷଘର ଭିତରକୁ ସେ ଗଲେ ମୋର ଜାଣ ନିଜ ଲା ଉପାସ । ଝିଅ ବୋଲି ରୁ ସିନା ସହୁଛୁ, ହେଲେ ତୋ ଶ୍ୱଶୁରଙ୍କ କଥା ଭାବୁଚୁ ନା ? ତୋର ତ ପୁଅଟେ ହେଲାନ, ପୁଣି ଜାତି-ଛଡ଼ା ଝିଅକୁ ନେଇ ରୋଷଘରେ ପୂରେଇଲେ ତୋ ଶ୍ୱଶୁର ମୁହଁରେ ବର୍ଷକିଆ ପିଣ୍ଡପାଣି ଦବାଟା କେମିତି ଘଟିବ ? ସେ ଆଉ କଣ ଏ ଘରୁ ପାଣି ଛୁଇଁବେ ?

ହେ ଭଗବାନ ! ଶ୍ୱଶୁରଙ୍କ ମୃତ୍ୟୁ ହୋଇଗଲାଣି ପ୍ରାୟ ଗୁଳିଏ ବର୍ଷ ହେଲା । ସେତେବେଳକୁ ଲୀଳକଣ୍ଠ ମାତ୍ର ଦଶ ବର୍ଷର ପିଲା । ମା'ଙ୍କ କୋଳରେ ବଢ଼ି ଉଠି ସେ

ଆଜି ପୁଣି ବୁଢ଼ା ହେଲେଣି । ଗୁଳଶ ବୃକ୍ଷ ତଳେ ମରିଥିବା ମଣିଷଟି କ'ଣ ସତରେ ଅପେକ୍ଷା କରି କୋଉଠି ରହିଛି ବର୍ଷରେ ଥରେ ପିଣ୍ଡପାଣି ପାଇବା ପାଇଁ ? ଶ୍ରାଦ୍ଧ-ଦିନର ସେଇ ବୋହୂ ରନ୍ଧା ଅନ୍ନ ବ୍ୟଞ୍ଜନ ଖାଇବା ପାଇଁ ?

କେଜାଣି !

ନୀଳାବତୀ ବି ସେଇ ଚିରାଚରିତ ସଂସ୍କାର ଭିତରୁ ମୁକ୍ତ ହୋଇନାହାନ୍ତି । ଏତେ ଦେଶ ବୁଲିଲେ, ସ୍ୱାମୀଙ୍କ ସହିତ ଏତେ ସଭା-ସମିତିକୁ ଗଲେ, ଏତେ ପୁରସ୍କାର ବାଣ୍ଟିଲେ; କିନ୍ତୁ ସେ ସବୁର ପ୍ରଭାବ ଯେମିତି ପୁନର୍ବାର ଗାଁର ଏଇ ପ୍ରାଚୀର ପାଖରେ ମଉଳିଗଲା । ସେ ତ ସେଇ ଦୁର୍ବଳା ନାରୀ । ଗାଉଁଲି-ଆତ୍ମୀୟସ୍ୱାପରିବେଷ୍ଟିତା ମହିଳାଟିଏ । କିନ୍ତୁ ତାଙ୍କର ସ୍ୱାମୀ ? ନୀଳକଣ୍ଠ ?

ଏଇ ଗାଉଁଲି ପରିବେଶରେ ସେ ବି ନ ଘରୌ ନ ଘାଟୌ । ସହର-ବାସ ତାଙ୍କର ସରିଯାଇଛି । ଏବେ ତ ଅବଶିଷ୍ଟ ଜୀବନଟା ଏଇ ଗାଁରେ ହିଁ କଟେଇବାକୁ ପଡ଼ିବ ।

ରାଜନୀତି ସେ ଛାଡ଼ିଛନ୍ତି । ବର୍ତ୍ତମାନ ରାଜନୀତିର ଅବସ୍ଥା ଯାହା, ସେଥିରେ ସେ ନିଜକୁ ଖାପଖୁଆଇ ପାରିନାହାନ୍ତି । ଅଞ୍ଚଳର ବହୁ କର୍ମୀ ବହୁ ବନ୍ଧୁଙ୍କର ଅନୁରୋଧ ସତ୍ତ୍ୱେ ସେ ଆଉ ନିର୍ବାଚନରେ ଛିଡ଼ା ହୋଇନାହାନ୍ତି । ଇଚ୍ଛା ଥିଲା ଗଠନମୂଳକ କାର୍ଯ୍ୟ କରିବେ । ମହାତ୍ମା ଗାନ୍ଧିଙ୍କଦ୍ୱାରା ଅନୁପ୍ରାଣିତ ମଣିଷଟି କ୍ଷମତା-ରାଜନୀତିରେ ରହି ଗାଁ ଅଞ୍ଚଳ, ଦେଶ ପାଇଁ କ'ଣ ବା କଲେ ? ଗାନ୍ଧିଙ୍କର ସେଇ ସ୍ୱପ୍ନ ଆଜି ବି ପୂର୍ଣ୍ଣତା ଲାଭ କରିନାହିଁ । ସେଇ ଜାତିଭେଦ—ସେଇ କୁସଂସ୍କାର ଆଜି ବି ସମାଜକୁ ଆକଣ୍ଠ ଗ୍ରାସ କରି ରହିଛି । ସଭ୍ୟତା ନାଁରେ ଦେଶର ଯୋଉ ଅଗ୍ରଗତି ତାହା କ'ଣ ବାସ୍ତବ-ଉନ୍ନତି ? ଖାଲି ଅନୁକରଣ—ମନ୍ଦର ଅନୁକରଣ । ତଥାକଥିତ ନବ୍ୟ ସଭ୍ୟମାନେ ଅନୁକରଣ କରିବା ଛଡ଼ା ମୌଳିକ ବୁଦ୍ଧିର ପ୍ରୟୋଗ କରୁଛନ୍ତି କେଉଁଠି ? ପୁରାତନପନ୍ଥୀମାନେ ସେଇ ପୁରାତନ-ଯୁଗର ଚକ୍ରାଧାରରେ ହିଁ ରହିଯାଇଛନ୍ତି ।

ଦେଶର ଏ ଦୁର୍ଭାଗ୍ୟର ଅବସାନ କେବେ ? ନେତା-ବହୁଳ ଦେଶରେ ନେତାମାନେ ତ କ୍ଷମତା ପାଇଁ ଘୋଡ଼ଦୌଡ଼ରେ ମାତିଛନ୍ତି । କିଛି ଲୋକ ଯଦି କ୍ଷମତାଲିପ୍ସା ଛାଡ଼ି ସମାଜକୁ ଫେରି ନ ଆସନ୍ତି, ସମାଜର ସ୍ୱାସ୍ଥ୍ୟ-ସମୃଦ୍ଧି ଅସମ୍ଭବ । ତେଣୁ ...

ତେଣୁ ନୀଳକଣ୍ଠ ଫେରିଆସିଥିଲେ । ଫେରିଆସିଥିଲେ ସହର ଭିତରୁ ଗାଁକୁ । ଗାଁରେ ତ ସେ କିଛି ବର୍ଷ ବିତେଇ ଦେଇ ସାରିଲେଣି; କିନ୍ତୁ କଲେ କ'ଣ ? ଯାହା କରିପାରିବାର କଥା ତାହା କରିପାରିଲେ କେଉଁଠି ?

ଅନେକ ଦିନ ଗାଁ ଛାଡ଼ି ଯାଇଥିବା ନୀଳକଣ୍ଠଙ୍କୁ ପ୍ରଥମେ ପ୍ରଥମେ ଗାଁର ଆବହାଓ୍ୱା ବେଶ୍ ଭଲ ଲାଗିଥିଲା । ସେଇ ବିସ୍ତୀର୍ଣ୍ଣ ସବୁଜ କ୍ଷେତକୁ ଚାହିଁ ସେ ଭାବୁଥିଲେ ବାସ୍ତବିକ୍ ଏ ପୃଥିବୀ ବିରାଟ—ସୀମାଶୂନ୍ୟ—ଅନନ୍ତ । ଏଠି ସୀମା-ସରହଦ-ଗୁ ଦ୍ୱନ୍ଦ୍ୱ-ହିଂସା-ପରଶ୍ରୀକାତରତାର ସ୍ଥାନ ନାହିଁ । ଗୋଟାଏ ବର୍ଷ ବେଶ୍ ଭଲରେ କଟି ଯାଇଥିଲା । ତା'ପରେ ନୀଳକଣ୍ଠ ଭଲକରି ବୁଝିପାରିଥିଲେ ଯେ ସେ ଆଧୁନିକମାନଙ୍କୁ ନ୍ୟାୟ ବାଟରେ ଚାଲିବା ପାଇଁ ପ୍ରବର୍ତ୍ତାଇ ପାରୁନାହାନ୍ତି ଏବଂ ଗୁରୁଜନ ସ୍ଥାନୀୟ ରକ୍ଷଣଶୀଳମାନଙ୍କ ପୁରୁଣା ଦୃଷ୍ଟିଭଙ୍ଗୀର ପରିବର୍ତ୍ତନ ମଧ୍ୟ କରାଇ ପାରୁନାହାନ୍ତି । ବ୍ୟର୍ଥତାର ହାହାକାରରେ ସେ ଜଳିଯିବାକୁ ବସିଛନ୍ତି । ଅନ୍ୟମାନଙ୍କୁ ପ୍ରଭାବିତ କରିବା ପରିବର୍ତ୍ତେ ସେ ନିଜର ସତ୍ତାକୁ ହରେଇବାକୁ ବସିଛନ୍ତି ।

ନାବାଳିକା ସନ୍ତାନଶୂନ୍ୟା ବାଳିକା-ବିବାହ ଉଚିତ ନୁହେଁ । ଜୀବନଭରି ସଭା-ସମିତିରେ ଗୁରୁଗମ୍ଭୀର କଣ୍ଠରେ ଏଇ ଭାଷଣ ସେ ଦେଇଆସିବା ପରେ ନିଜ କ୍ଷେତ୍ରରେ ଠିକ୍ ତାର ଓଲଟା ଆଚରଣ କଲେ । ପାଞ୍ଚଜଣଙ୍କ କଥାରେ ନିଜସ୍ୱ ବୁଦ୍ଧି-ବୃତ୍ତିକୁ ଜଳାଞ୍ଜଳି ଦେଲେ । ଭାଗ୍ୟର କି ବିଡ଼ମ୍ବନା ! ନିୟତିର କି କ୍ରୂର ଉପହାସ !

ଏଇ କେତେ ମାସ ତଳେ । ନିଜ କୁଟୁମ୍ବ ଏପାରି ସେପାରି ଭାଇ ଦାମୋଦରର ଅପ୍ରାପ୍ତବୟସ୍କା ବିଧବା-କନ୍ୟାର ବିବାହ ପାଇଁ ସେ ଆପ୍ରାଣ ଚେଷ୍ଟା କରି ମଧ୍ୟ ବିଫଳ ହେଲେ । ଯଦି ବା ସେ ଦାମୋଦରକୁ ବୁଝେଇ ଶୁଝେଇ ରାଜି କରେଇଥିଲେ, ମାତ୍ର ଦାମୋଦରର ଅଶୀବର୍ଷ ବୟସ୍କ ଜୀବିତ ପିତା ସମାଜ-ପଣ୍ଡାଙ୍କୁ ସେ କ'ଣ ବୁଝେଇପାରିଥିଲେ ?

ନୀଳ କଥାରେ ପଡ଼ି ଦାମ ଯଦି କୁଳଧର୍ମ ଭୁଲି ଚଉଦବର୍ଷର ବିଧବା ଝିଅଟାର ବିବାହ କରିଦିଏ, ତେବେ ବୁଢ଼ା ଆତ୍ମଘାତୀ ହେବେ । ଏତେ ବଡ଼ ଅନ୍ୟାୟ ସେ ସହିପାରିବେନି ।

କେଉଁ ପୁଅ ନିଜ ଜାଣତରେ ପିତୃ-ମୃତ୍ୟୁର କାରଣ ହେବ । ଦାମ ଶଙ୍କିଗଲା । ଦଉଡ଼ି ଦଉଡ଼ି ଆସି କହିଲା—ନୀଳାନ୍ନା, ତମେ କନକକୁ ବାହା ଦିବା ଚେଷ୍ଟାରୁ କ୍ଷାନ୍ତ ହୁଅ । ବାହାଘରଟା ହେଲେ ବୁଢ଼ା ଯଦି ବେକରେ ଦଉଡ଼ି ଦେଇ-ଦିଏ, ତା'ହେଲେ କଥା ସରିଯିବ । ସାତ ପୁଅରେ ଗୋଟିଏ ଝିଅ । ଯଦି ହିନମାଗି ହେଇ ଜନ୍ମ ହେଇଚି, ଭାଗ୍ୟକୁ ପୋଡ଼ି ଖାଇଚି, ଖାଉ ! ଆଉ ତାକୁ ସୁଖୀ କରେଇବାର ଚେଷ୍ଟା କାହିଁକି ?

ନୀଳକଣ୍ଠ ପରାଜିତ ହେଇଚନ୍ତି ।

ଗାଁର ବହୁ ମତ ବହୁ ଦଳକୁ ଏକାଠି କରାଇବା ପାଇଁ ସେ କ'ଣ କମ୍ ଯତ୍ନ କରିନାହାନ୍ତି; କିନ୍ତୁ ଫଳ ହେଲା କଣ ? କେଉଁ କାଳରୁ ଗାଁରେ ଖୁବ୍ ଜାକ-

କ୍ରମକରେ ପାଳିତ ହୋଇ ଆସୁଥିବା ରଜପର୍ବ ଦୁଇଟା ହେଲା—ଗାଁମୁଣ୍ଡରେ ଗୋଟାଏ; ଗାଁ ଶେଷରେ ଗୋଟାଏ । ଯାଲିସ୍ ନାହିଁ । ଗାଁ ଦୁଇଭାଗ । ଅବଶ୍ୟ କେତେକାର ବାହାଘରରେ ଗାଁର ଉଭୟ ଗୋଷ୍ଠୀକୁ ନିଜ ଘରକୁ ଆଣି ଖୁଆଇପାରିଛନ୍ତି ନୀଳକଣ୍ଠ; ମାତ୍ର ବିଭେଦ ଘୁଞ୍ଚିନାହିଁ । ଭୋଜନପତ୍ର ପଡ଼ିବାବେଳେ ତ ଦୁଇ ଗୋଷ୍ଠୀ ଅଲଗା ଅଲଗା ବସିଲେ, ପରସ୍ପର ପରସ୍ପରକୁ ପଛକରି ।

ଗାଁର ସାର୍ବଜନୀନ ଦେବମନ୍ଦିରର ଅବସ୍ଥା ସବୁଠୁ ଦୁର୍ଦ୍ଦଶାଗ୍ରସ୍ତ । ଅବଶ୍ୟ ଏ ମନ୍ଦିର ବହୁ ପୂର୍ବରୁ ପ୍ରତିଷ୍ଠିତ ହୋଇଥିଲା ନୀଳକଣ୍ଠଙ୍କର ପୂର୍ବପୁରୁଷଙ୍କଦ୍ୱାରା । ଏହି ମନ୍ଦିର ପାଇଁ ଧାର୍ମିକ-ପୁରୁଷ ଜମିବାଡ଼ି ଖଞ୍ଜିଦେଇ ସେବାପୂଜାର ବ୍ୟବସ୍ଥା କରିଦେଇ ଯାଇଥିଲେ; କିନ୍ତୁ କାଳକ୍ରମେ ଏ ମନ୍ଦିରରେ ସରକାରୀ ଆଇନ ପ୍ରବେଶ କଲା—ଫଳରେ ମନ୍ଦିର ହେଲା ସର୍ବସାଧାରଣଙ୍କର । ମନ୍ଦିର ପାଇଁ ସରକାରଙ୍କ ତରଫରୁ ଟ୍ରଷ୍ଟି ନିଯୁକ୍ତ ହେଲେ । ଅପର ଗାଁର ଲୋକ ମନ୍ଦିରର ତତ୍ତ୍ୱ ନେଲେ । ବର୍ତ୍ତମାନ-ଅବସ୍ଥା—ସଂଧ୍ୟା ଆରତି ସମୟରେ ଘଣ୍ଟା ବଜାଇବାକୁ ଲୋକ ମିଳୁନାହାନ୍ତି । ସକାଳ ଦଶଟାବେଳେ ମନ୍ଦିର କବାଟ ଖୋଲୁଛି । ଦୈନିକ ପାଞ୍ଚସେର ଚାଉଳର ଅନ୍ନ ପରିବର୍ତ୍ତେ ପାଞ୍ଚପା ଚାଉଳ ରନ୍ଧାହେଉଛି । ସଂଧ୍ୟାରେ ନୀଳକଣ୍ଠ ଏଇ ମନ୍ଦିରକୁ ଯାଆନ୍ତି । ମନ୍ଦିର ଚତ୍ୱରରେ ବସନ୍ତି । ଦେଖନ୍ତି ମନ୍ଦିରରେ ଫାଟ ଦେଖାଦେଇଛି । ମନ୍ଦିର ଚୂଳରେ ବରଗଛଟାଏ ଉଠି କ୍ରମଶଃ ବଢ଼ିବାରେ ଲାଗିଛି । ଟ୍ରଷ୍ଟି କହନ୍ତି ମରାମତି ପାଇଁ ଚଳିତବର୍ଷ ହେଲା ବଜେଟରେ ଟଙ୍କା ବ୍ୟବସ୍ଥା କରାଯାଇ ସେଙ୍କସନ୍ ପାଇଁ ଉପରକୁ ଲେଖାଯାଉଛି; ମାତ୍ର ସେଙ୍କସନ୍ ଆସୁନାହିଁ । ଦେବୋତ୍ତର ବିଭାଗ ନୀରବ । ସର୍ବସାଧାରଣଙ୍କର ଦାୟିତ୍ୱ କିଛି ନାହିଁ ।

ଗାଁ ମଝି ସର୍ବସାଧାରଣ ପୋଖରୀ ଦଳ-ପୂର୍ଣ୍ଣ । ପାଞ୍ଚବର୍ଷ ତଳେ ସ୍ଥାନୀୟ ସରପଞ୍ଚ ସରକାରରୁ କେତେ କ'ଣ ଟଙ୍କା ଆଣି; ଅଳ୍ପ କିଛି ଦଳ ପରିଷ୍କାର କରିଥିଲେ; ମାତ୍ର ସେଥିରେ ପୋଖରୀ ଅବସ୍ଥାର କାଣିଚାଏ ବି ପରିବର୍ତ୍ତନ ହୋଇନଥିଲା । ବର୍ଷକୁ ବର୍ଷ ଦଳ ବଢ଼ିଚାଲିଛି । ବର୍ତ୍ତମାନ ବୋଧହୁଏ ଦଳର ଝଟା ଉପରେ ମଣିଷ ପାଦରେ ଚାଲିଯାଇପାରିବ; ପାଦରେ ପାଣି ଟିକିଏ ବି ଲାଗିବ ନାହିଁ ।

ନୀଳକଣ୍ଠଙ୍କର ସୁବିସ୍ତୃତ ଜଗତ ଆଜି କ୍ଷୁଦ୍ର ଗଣ୍ଡି ଭିତରେ ହିଁ ଆବଦ୍ଧ ହୋଇଯାଇଛି ।

ଯେଝା ସ୍ଥାନରେ ଯେତେ ରହି ଏଇଭଳି ଚିନ୍ତାରେ ବ୍ୟସ୍ତ । ମଣିଷ ଏକ ପାର୍ଥିବ ଜୀବ । କ୍ଷୁଧା-ତୃଷାର ବଶବର୍ତ୍ତୀ ସେ । ମଣିଷ ଯେଉଁ ଅବସ୍ଥାରେ ଥାଉ ନା କାହିଁକି, ତାକୁ ଭୋକ ଲାଗିଲେ ଖାଇବାକୁ ପଡ଼େ—ଶୋଷ ଲାଗିଲେ ପିଇବାକୁ ପଡ଼େ ।

ବାହାଘରକୁ ଆସିଥିବା ପୂର୍ବାଶ୍ରୀ ଗ୍ରାମବାସୀ ପ୍ରଭୁପ୍ରସାଦ ମଧ୍ୟାହ୍ନ-ଭୋଜନର ଆୟୋଜନ କରିଥିଲେ । ସମସ୍ତଙ୍କର ଖାଇବାପର୍ବ ଶେଷ ହେବା ପରେ ବୃନ୍ଦାବନବାବୁ ସମସ୍ତଙ୍କୁ ସ୍ମରଣ କରାଇଦେଇଥିଲେ କାଲି ଚତୁର୍ଥୀ । ଚତୁର୍ଥୀରେ ଝିଅ ଘରକୁ ବର ଯିବ ।

ଏକଥା କାହାରି ମନେ ନଥିଲା । ଆଜି ରାତିରେ ସବୁ ସରଞ୍ଜାମ ତିଆରି କଲେ କାଲି ସକାଳକୁ ବର ପଠେଇହେବ । ସନ୍ଧ୍ୟାସରିକି ସମସ୍ତେ ପୁଣି ଚତୁର୍ଥୀ ଖଟର ଆୟୋଜନରେ ଲାଗିଗଲେ ।

ଲାବଣ୍ୟର କିନ୍ତୁ ଆଉ କୌଣସିଥିରେ ମନ ନାହିଁ । ସ୍ପୃହା ନାହିଁ । ଆଗ୍ରହ ନାହିଁ । ନିଜର ପିଞ୍ଜରାଳୟରେ ସେ ନିଜକୁ ଭାବୁଛି ଖାପଛଡ଼ା ।

ଏହା ପୁଣି ସମ୍ଭବ ହୁଏ । ଖାଲି ଲାବଣ୍ୟ-ଜୀବନରେ ନୁହେଁ, ଅଗଣିତ 'ଲାବଣ୍ୟ'ଙ୍କ ଜୀବନରେ ।

# ପାଞ୍ଚ

ଚତୁର୍ଥୀ ଦିନର ଜଞ୍ଜାଳ ମେଣ୍ଟିଯିବା ପରେ—ହଠାତ୍ ବାପା ଲାବଣ୍ୟକୁ ଡକେଇପଠେଇଲେ ।

ବିଷଣ୍ଣ ମୁହଁରେ ଲାବଣ୍ୟ ଯାଇ ଠିଆହେଲା । ମନରେ ଆଶଙ୍କା—ବାପା ରାଗ କରିଥିବେ ନିଶ୍ଚେ ।

ବାପା ପଚାରିଲେ—ତୁ କୋଉଦିନ ଯିବୁ ମା' ?

ଲାବଣ୍ୟ ବୁଝିପାରିଲା ନାହିଁ ହଠାତ୍ କାହିଁକି ଏ ପ୍ରଶ୍ନ ! ବିବାହର ଦୀର୍ଘଦିନ ପରେ ସେ ଆସିଛି । ସେ ବାହାରିଲେ ବାପା ତାକୁ ଅଟକାଇବାର କଥା; ମାତ୍ର ତା' ପରିବର୍ତ୍ତେ ବାପା ନିଜେ ହିଁ ତା' ଯିବା ପ୍ରଶ୍ନ ଉଠାଉଛନ୍ତି । ତା ହୃଦ ଭିତରଟାକୁ କିଏ ଯେମିତି ନିଆଁ ହୁଳା ଦେଇ ଚାଳିଦେଲା । ସତରେ, ଏ ଘରଠୁ ସେ କେତେ ଦୂରେଇଗଲାଣି ! ଏଭଳି ବ୍ୟବଧାନରେ ଯେଉଁମାନେ 'ସେତୁ' ହୁଅନ୍ତି, ସେମାନେ ଆଜି କାହାନ୍ତି ?

ପୁଣି ସେଇ ସନ୍ତାନର ଚିନ୍ତା ! ପୁଣି ସେଇ ଗତାନୁଗତିକତାର ବନ୍ଧନ ! ଏ ଚିନ୍ତା ନୀଳକଣ୍ଠଙ୍କୁ ମଧ୍ୟ ଘାରିଥିଲା । ତାଙ୍କର ନିଃସ୍ୱ ଜୀବନରେ ସେଇ 'ସେତୁ'ଟି ହିଁ ସଂସାର ସାଗରକୁ ପାରିହେବାପାଇଁ ଏକମାତ୍ର ପଥ ହୁଅନ୍ତା । ସେ ତ ଦେଖିଚନ୍ତି, ତାଙ୍କ ପରିବାରର ଘନିଷ୍ଠ ବନ୍ଧୁ ନବଘନଙ୍କୁ । ସେ ବି ତ ପୁତ୍ରମୁଖରୁ ବଞ୍ଚିତ । ଏକମାତ୍ର କନ୍ୟାର ପିତା ହେଇ ସେ ଏକ ପରିପୂର୍ଣ୍ଣ ଜୀବନ ଯାପନ କରିପାରୁଛନ୍ତି । ତାଙ୍କ ଝିଅ-ଜ୍ୱାଇଁ ସିମଳାରେ । ଝିଅର ପ୍ରଥମ ପୁତ୍ର ଜନ୍ମହେବା ପରଠାରୁ ନବଘନଙ୍କ ପରିବାରରେ ହିଁ ରହୁଛି । ସେହି ଶିଶୁ ଆଜି ଛ' ବର୍ଷର ହେଲାଣି; 'ଅ ଆ କ ଖ' ଲେଖି ଶିଖିଲାଣି । ନବଘନଙ୍କର ସ୍ତ୍ରୀ ନାତିକୁ କୋଳରେ ଧରି ଗେଲ କରୁଥିବା-ବେଳେ ବୃଦ୍ଧ ନବଘନ କି ଖୁସି ନ ହୁଅନ୍ତି !

ନୀଳକଣ୍ଠଙ୍କର ନଜର ତ ନାହିଁ—ଯଦି ଲାବଣ୍ୟର ହେଇଥାନ୍ତା !

ବାପାଙ୍କ ପ୍ରଶ୍ନର କିଛି ଉତ୍ତର ଦେଇପାରିଲାନି ଲାବଣ୍ୟ ।

ଏଇ ନୀରବତା ଭିତରେ ଲୀଳାବତୀ ମଧ୍ୟ ପହଞ୍ଚିଛନ୍ତି । ତାଙ୍କୁ ଦେଖି ନୀଳକଣ୍ଠ ଯେମିତି ଅକୂଳ ଦରିଆ ଭିତରେ କୂଳର ସନ୍ଧାନ ପାଇଲେ । ତାଙ୍କ ମୁହଁରେ ଫୁଟି-ଉଠିଲା ସାମାନ୍ୟ ହସ । ତାଙ୍କର ଏଇ ସାମାନ୍ୟ ହସଟିକକ ବାୟୁମଣ୍ଡଳର ଗୁରୁତ୍ୱକୁ ହ୍ରାସ କରିବା ଦିଗରେ ସହାୟକ ହେଲା । ଲୀଳାବତୀଙ୍କ ମନରେ କଥା କହିବାର ସାହସ ମଧ୍ୟ ଯୋଗାଇଲା ।

ଲୀଳାବତୀ କହିଲେ—ଲବଣ୍ୟ କହୁଥିଲା ସେ ବେଶିଦିନ ରହିପାରିବ ନାହିଁ । ଶ୍ରୀକାନ୍ତଙ୍କର ପନ୍ଦରଦିନ ଛୁଟି ଅଛି । ନଟଳ ହେଇ ସେମାନେ ପୁଣି ଫେରିବେ ।

ନୀଳକଣ୍ଠ କହିଲେ—ମୁଁ ତ ସେଇ କଥା ଲବଣ୍ୟକୁ ପଚାରୁଥିଲି—କେବେ ଯିବ ସେ ? ବାହାଘରର ଗୋଳମାଳ ଭିତରେ ଝିଅ-ଜ୍ୱାଇଁଙ୍କ ଭଲମନ୍ଦ ତ କିଛି ବୁଝାହୋଇ ପାରିଲାନି । ଶ୍ରୀକାନ୍ତ କ'ଣ ଭାବିଥିବ କେଜାଣି !

ନୀଳକଣ୍ଠ ଭାବୁଥିଲେ, ସେ ଆଜି ଶ୍ରୀକାନ୍ତ ଆଖିରେ ଭ୍ରଷ୍ଟ ହୋଇଗଲେ । ଶ୍ରୀକାନ୍ତ ତାଙ୍କୁ ସମ୍ମାନ କରେ । ତାଙ୍କ ସାମନାରେ କଥାବାର୍ତ୍ତା କରେ ନାହିଁ । ତା' ଆଖିରେ ସେ ଥିଲେ ଦେବତା । ସେଇ 'ଦେବତା' ଆଜି ପୃଥିବୀର କ୍ଷୁଦ୍ରାତିକ୍ଷୁଦ୍ର ଜୀବଠାରୁ ମଧ୍ୟ ଭ୍ରଷ୍ଟ ହୋଇଯାଇଛନ୍ତି । ପରିବେଶ, ପରିସ୍ଥିତି ତାଙ୍କୁ ଆଜି ମୂକ-ସ୍ଥାଣୁ ପ୍ରତିମୂର୍ତ୍ତିରେ ପରିଣତ କରିଛି ।

ନାଃ, କିଛି ଭଲଲାଗୁନି—ସଂସାର ଆଉ ସମାଜ ! ସଂସାର ଆଉ ସମାଜ ନାମକ ଜଡ଼ବସ୍ତୁର ପିଠିରେ ଯେ ଦିନେ ଚାବୁକ ଦେଇ ତାକୁ ସଜୀବ କରୁଥିଲା, ସେ ନିଜେ ଆଜି ସେଇ ସଂସାର ଆଉ ସମାଜର ଚାବୁକମାଡ଼ରେ ଅଚେତନ ହୋଇଯିବାକୁ ବସିଛି ।

ନୀଳକଣ୍ଠ କହିଲେ—ଲବଣ୍ୟ, ଅନେକ ଦିନ ପରେ ତୁ ତୋ ମା' ପାଖକୁ ଆସିଛୁ । ଅନ୍ତତଃ ଆଉ ଦିନ ଦୁଇଟା ରହିଯିବୁ ।

ଲବଣ୍ୟ ମୁହଁରେ କିଛି ନ କହିଲେ ମଧ୍ୟ ନୀରବରେ ସମ୍ମତି ଜଣେଇଲା ।

ଏଇ ସମୟରେ ବାବୁ ଆସି ଜଣେଇଲା—ଲବଣ୍ୟ ପାଇଁ କନକ ତଳେ ଅପେକ୍ଷା କରିଚି ।

ଲବଣ୍ୟ ତଳକୁ ଚାଲିଗଲା । ସେ ଚାଲିଗଲା ପରେ ହଠାତ୍ ପୁଣି ନୀଳକଣ୍ଠ ଓ ଲୀଳାବତୀଙ୍କ ମୁହଁରେ ଫୁଟିଉଠିଲା କାରୁଣ୍ୟର ଛାପ । ଛାତିପଞ୍ଜରା ଚିରି ବାହାରି-ଆସିଲା ଦୀର୍ଘଶ୍ୱାସ ।

ଲୀଳାବତୀ ପ୍ରଶ୍ନକଲେ—କେତକୀ କଣ ସୁଖୀ ହେବ ? ଭାଗ୍ୟ-ଦେବତା ତା' ଜୀବନପୃଷ୍ଠାରେ କ'ଣ ଯେ ଲେଖିଚି ତାହା କାହାକୁ ଜଣାଅଛି ? ଏ ପ୍ରଶ୍ନର ଉତ୍ତରଟା ଖାଲି ଅନୁମାନ ଉପରେ ଦିଆଯାଇପାରେ । ଲୀଳାବତୀଙ୍କର ଏ ନେଇ ଯେଉଁ ଆଶଙ୍କା, ନୀଳକଣ୍ଠଙ୍କର କ'ଣ ନାହିଁ ? ସେ ମୁହଁ ଖୋଲି ସିନା କାହାରିକୁ କିଛି କହୁ-ନାହାନ୍ତି, କିନ୍ତୁ ତାଙ୍କ ଛାତି ଭିତରଟା କ'ଣ ଜଳିପୋଡ଼ି ଯାଉନାହିଁ ? କେତକୀ ବିବାହର ଆମୂଳଚୂଳ ଘଟଣା ତାଙ୍କୁ କ'ଣ ଏକ ମର୍ମାନ୍ତକ-ଅଭିଜ୍ଞତାର ଖୋରାକ ଯୋଗାଇ ନାହିଁ ? ସେ ତାଙ୍କ ଜୀବନର ଆଉ ଏକ ଗଳ୍ପ—ସେ ଗଳ୍ପର ଅନ୍ତ ହି ସମ୍ପର୍କରେ ତାଙ୍କ ଛଡ଼ା ଦ୍ୱିତୀୟ ଆଉ କିଏ ଜାଣିଛି ? ନୀଳକଣ୍ଠଙ୍କର ପ୍ରାକ୍-ବୈବାହିକ

ଜୀବନର ଘଟଣା ବିଷୟରେ ଲୀଳାବତୀ ସମ୍ପୂର୍ଣ୍ଣ ଅଜ୍ଞାତ । ସେ ଏକ ମର୍ମନ୍ତୁଦ ସ୍ମୃତି । ସେଇ ସ୍ମୃତି ଅହରହ ନୀଳକଣ୍ଠଙ୍କର ପ୍ରାଣକୁ ପୋଡ଼ି-ଜାଳି ଛାରଖାର କରୁଛି । ସେଇ ଦୁଃଖଦାୟକ ସ୍ମୃତିକୁ ଭୁଲିଯିବା ପାଇଁ ସିନା ସେ କେତକୀର ବିବାହର ଆୟୋଜନ କରିଥିଲେ । କିନ୍ତୁ କିଏ ଜାଣିଥିଲା···

କିଏ ଜାଣିଥିଲା ଆନନ୍ଦର ମା' ତାଙ୍କ ଉପରେ ଏମିତି ପ୍ରତିଶୋଧ ନେବେ ବୋଲି !

ହଁ, ପ୍ରତିଶୋଧ ନୁହେଁ ତ ଆଉ କଣ ? ଖାଲି ପ୍ରତିଶୋଧ ନୁହେଁ, ଚରମ ପ୍ରତିଶୋଧ ।

ନୀଳକଣ୍ଠଙ୍କର ନିଃଶ୍ୱାସ ଆହୁରି ପ୍ରଖର ହେଲା । ସେଇ ନିଃଶ୍ୱାସରେ ମଧ୍ୟାହ୍ନ କ୍ଲାନ୍ତିର ଉଷ୍ଣତା । ତନ୍ଦ୍ରି ଛୁଟିଗଲା । ସେ ଲୀଳାବତୀଙ୍କୁ କପେ ଗ୍ଲୁକୋଜ୍ ଆଣିବାର ବରାଦ୍ ଦେଇ ଏକାକୀ ରହିବାର ସୁଯୋଗ ନେଲେ, ଆଉ ସେଇ ସୁଯୋଗରେ ଅତୀତଟାକୁ ବିଶ୍ଳେଷଣ କରିବସିଲେ ।

ପଚିଶତିରିଶ ବର୍ଷ ତଳର କଥା ।

ଆନନ୍ଦର ମା' ଉମାଶଶୀଙ୍କର ବୟସ ସେତେବେଳକୁ ଷୋହଳ । ନୀଳକଣ୍ଠ ବି. ଏ. ପାସ କରିଥାନ୍ତି । ତାଙ୍କ ବାପା ଆଉ ମା' ତାଙ୍କ ବିବାହ ପାଇଁ ତତ୍ପର ହୋଇ ଉଠିଥିଲେ ।

ଉମାଶଶୀଙ୍କର ବାପା ନୀଳକଣ୍ଠଙ୍କର ବାପାଙ୍କର ସମବୟସୀ—ବାଲ୍ୟବନ୍ଧୁ । ଉଭୟ ପରିବାର କୁଳୀନ ପରିବାର । ମା' ବୃନ୍ଦାବତୀଙ୍କ ମାମୁଘର ଗାଁରେ ହିଁ ଉମାଶଶୀଙ୍କ ଘର । ମାମୁଘର ଜରିଆରେ ହିଁ ପ୍ରସ୍ତାବଟା ପଡ଼ିଥିଲା । ପ୍ରସ୍ତାବ ପୂର୍ବରୁ ଅଜା-ଘରକୁ ଯାଇ ନୀଳକଣ୍ଠ ଉମାଶଶୀଙ୍କୁ ଦେଖିବାର ସୁଯୋଗ ପାଇଥିଲେ । ଖାଲି କଣ ଦେଖିଥିଲେ, କଥାବାର୍ତ୍ତା ମଧ୍ୟ କରିଥିଲେ । ମଧ୍ୟଯୁଗର ନାଇଟ୍‌ଭଳି ନୀଳକଣ୍ଠଙ୍କର ମନଟା ଥିଲା ରୋମାଣ୍ଟିକ୍ । ଷୋଡ଼ଶୀ ଉମାଶଶୀ ନୀଳକଣ୍ଠଙ୍କ ପ୍ରତି ଯେତିକି ଆକୃଷ୍ଟ ହୋଇଥିଲେ, ବି. ଏ. ପାଶ୍ କରି ନୀଳକଣ୍ଠ ହୋଇଥିଲେ ତା'ଠୁ ଅଧିକ । ବିବାହ ପ୍ରସ୍ତାବରେ ଉଭୟ ବେଶ୍ ସ୍ୱପ୍ନ ଦେଖିବାକୁ ଆରମ୍ଭ କରିଥିଲେ । କିନ୍ତୁ ପ୍ରଜାପତି ପୁରୁଷ ସ୍ତ୍ରୀର ସମ୍ପର୍କଟାକୁ କୁଆଡ଼େ ଆଗରୁ ଲିପିବଦ୍ଧ କରି ରଖିଥାନ୍ତି । ଯେ ଯାହା ହାତ୍ତିରେ ସୂତିଲି ଦେଇଥାଏ, ସେ ତାହାରି ହାତରେ ହିଁ ଛନ୍ଦହୁଏ ।

ବିବାହ ପ୍ରସ୍ତାବ ଅନେକ ବାଟ ଆଗେଇଯାଇ ଭାଙ୍ଗିଗଲା । ନୀଳକଣ୍ଠଙ୍କର ବାପା ସେତେବେଳେ ଅଡ଼ିବସିଲେ—ସସ୍ତାଖର୍ଚ୍ଚ ହଜାରେ ଟଙ୍କା ଓ ଗୋଟେ ମଟର ଗାଡ଼ି । ଉମାଶଶୀଙ୍କର ବାପା ମା' ଏ ସଂପର୍କରେ ବହୁତ ଭାବ ଚିନ୍ତା, ଆଲୋଚନା କରି

କୂଳ-କିନାରା କିଛି ପାଇଲେ ନାହିଁ । ପନ୍ଦର ହଜାର ଟଙ୍କା ଖର୍ଚ୍ଚ କରି ମଟର-ଗାଡ଼ିଟିଏ ଦେବା ସେମାନଙ୍କର ସାଧ୍ୟାତୀତ ।

ଉମାଶଶୀ ପରେ ସେ ସବୁ ଆଲୋଚନା ଶୁଣିଥିଲେ । ସେ ତ ମୂର୍ଖ ନୁହନ୍ତି । ମାଇନର ଫେଲ୍ ହୋଇଥିବା ଝିଅ ସେଦିନ ସାହସ କରି ନୀଳକଣ୍ଠଙ୍କ ପାଖକୁ ଗୋପନରେ ଚିଠି ଲେଖିଥିଲେ । ଚିଠିର ସାରମର୍ମ ଥିଲା—ତୁମ ବାପାଙ୍କର ଏ ଅନ୍ୟାୟ ଦାବି ମୋ ବାପା ପୂରଣ କରି ପାରିବେ ନାହିଁ; ଫଳରେ ଆମ ବିଭା-ଘରଟା ଭାଙ୍ଗିଯିବ । ତେଣୁ ତୁମେ ଯେପରି ହେଉ ଏହାର ପ୍ରତିକାର କର ।

ମାତ୍ର ସେତେବେଳେ ନୀଳକଣ୍ଠ ଏହାର କଣ ପ୍ରତିକାର କରିଥିଲେ ? ବାପାଙ୍କର ଏ ଅନ୍ୟାୟ ଦାବିର ପ୍ରତିବାଦ କରିବା ତ ଦୂରର କଥା, ବରଂ ଉମାଶଶୀଙ୍କର ଚିଠି ବିଷୟରେ ଚୁପ୍ ରହିଯାଇ, ସେ ଖୁବ୍ ପରି ବାପାଙ୍କ ନିଷ୍ପତ୍ତିକୁ ମଥା ପାତି ସହିନେଇଥିଲେ । ବାପାଙ୍କ ଇଚ୍ଛା ଅନୁସାରେ ବିବାହ ହେଲା ଅନ୍ୟତ୍ର—ଲୀଳାବତୀଙ୍କ ସହିତ । ଲୀଳାବତୀଙ୍କ ବାପା ପନ୍ଦର ହଜାର ଟଙ୍କା ନଗଦ ଗଣିଦେଇ ବରପାତ୍ରକୁ କିଣି ନେଇଗଲେ । ଆଉ ଉମାଶଶୀ ! ଆହୁରି ଦୁଇବର୍ଷ ଅଭିଆଡ଼ୀ ରହି ବାଲେଶ୍ୱରର ଏକ ଅପେକ୍ଷାକୃତ ଦରିଦ୍ର ପରିବାରରେ ବିବାହ କଲେ । ନୀଳକଣ୍ଠ ସେତେବେଳେ ସିନା ସତ୍ ସାହସ ଦେଖେଇ ପାରିଲେ ନାହିଁ; ମାତ୍ର ପରେ ଜୀବନଟାଯାକ ଉମାଶଶୀଙ୍କ ପାଖରେ 'ଅପରାଧୀ' ହୋଇ ରହିଗଲେ । ତେଣୁ ଏବେ ଯେତେବେଳେ ସେଇ ଉମାଶଶୀଙ୍କ ପୁଅ ସଦ୍ୟ ଓ. ଏସ୍. ସି. ସ୍କ୍ରକରେ ନିଯୁକ୍ତ ହୋଇଥିବା ଆନନ୍ଦ ସହିତ କେତକୀର ବିବାହ ପ୍ରସ୍ତାବ ପଡ଼ିଲା, ସେତେବେଳେ ନୀଳକଣ୍ଠ ଏ ସୁଯୋଗ ଛାଡ଼ିବାର ନୁହେଁ ବୋଲି ସହସା ମତ ଦେଇଥିଲେ । ଏହାଦ୍ୱାରା ସେ ହୁଏତ ନିଜ କୃତକର୍ମର ପ୍ରାୟଶ୍ଚିତ୍ତ କରିବେ । ଉମାଶଶୀଙ୍କର ପୁଅ ସହିତ ତାଙ୍କ ଝିଅର ବିବାହ ବିଧିର ନିର୍ଦ୍ଦେଶ ଭଳି ତାଙ୍କୁ ପ୍ରତୀୟମାନ ହେଲା । ଅତୀତର ଭୁଲକୁ ସଂଶୋଧନ କରିବାର ଏହା ଏକ ପ୍ରକୃଷ୍ଟ ସୁଯୋଗ । ହରମୋହନ ଯୌତୁକ ସମ୍ପର୍କରେ କୌଣସି ଆଲୋଚନା ହିଁ କରି ନଥିଲେ । ନୀଳକଣ୍ଠ ଭାବିଥିଲେ, ମାମୁଲି ଯାହା ସାଧାରଣତଃ ଦିଆଯାଏ ସେ ତ ଢା'ଠୁ ଅଧିକ ଦେବେ—ଆଉ ଅସୁବିଧା କଣ ?

ମାତ୍ର ବିବାହ-ଲଗ୍ନର ତିନଦିନ ଆଗରୁ କାର୍ ନେବାର ଦାବି ନେଇ ସେମାନେ ଆସିଥିଲେ । ନୀଳକଣ୍ଠ ହତବୁଦ୍ଧି ହୋଇ ବିବାହର ଆଗଦିନ ହରମୋହନଙ୍କ ଘରକୁ ଯାଇଥିଲେ ଓ ସେଇଠି ପୁଣି ଉମାଶଶୀଙ୍କ ସହିତ ଏକ ଭିନ୍ନ ପରିବେଶରେ ଦେଖାହୋଇଥିଲା । ସେମାନେ ନୀଳକଣ୍ଠଙ୍କୁ ଖୁବ୍ ଆଦର ଅଭ୍ୟର୍ଥନା କରିଥିଲେ । ଉମାଶଶୀଙ୍କର ସେ ରୂପ ଯୌବନ ଆଜି ନାହିଁ; ଚେହେରାରେ ଅନେକ ପରିବର୍ତ୍ତନ ଘଟିଛି । ଆଉ ନୀଳକଣ୍ଠଙ୍କର ମଧ୍ୟ । ସେ ବି ଆଜି ବାର୍ଦ୍ଧକ୍ୟର ଆହ୍ୱାନରେ ଅର୍ଦ୍ଧପକ୍ୱ

କେଶ, କମ୍ପିତ ଗଲିତଦନ୍ତ, କୋଟରଗତ ଚକ୍ଷୁ ପ୍ରଭୃତିର ଅଧିକାଂଶ ହୋଇ ଅନ୍ୟ ଏକ ରୂପ ଧାରଣ କରିଛନ୍ତି ।

ଉମାଶଙ୍କର ପ୍ରଥମ କରି ନୀଳକଣ୍ଠ 'ସମୁଦ୍ଧୁଣୀ' ସମ୍ବୋଧନ କଲେ । ନୀଳକଣ୍ଠ କହିଲେ—ସମୁଦ୍ଧୁଣୀ ! ଏ କି ଦାବି ! ବର୍ତ୍ତମାନ ମୋର ଅବସ୍ଥା ଜାଣ ତ ! ମୁଁ କଣ କାର୍ ଦବା ଅବସ୍ଥାରେ ଅଛି ?

ଏଇ କଥାବାର୍ତ୍ତାବେଳେ ହରମୋହନ ଉପସ୍ଥିତ ନ ଥିଲେ । ଉମାଶଙ୍କରଙ୍କର ଇଚ୍ଛା ବ୍ୟତୀତ ହରମୋହନଙ୍କର ଆଉ ସ୍ୱାଧୀନ ବକ୍ତବ୍ୟ କିଛି ନଥିଲା । ଉମାଶଙ୍କରୀ କହିଲେ—ସମୁଦ ! ତମେ ତ ବଡ଼ଜ୍ୱାଇଁଙ୍କୁ କାର୍ ଦେଇଛ !

"ହଁ ଦେଇଛି । ସେତେବେଳେ ଦେବାର କ୍ଷମତା ଥିଲା ବୋଲି ଦେଇଛି । କିନ୍ତୁ ବର୍ତ୍ତମାନ ସେ ଅବସ୍ଥା କଣ ମୋର ଅଛି ?"

ଏ ଉତ୍ତର ଶୁଣି ଉମାଶଙ୍କରୀ ହସିଉଠିଥିଲେ—କନ୍ୟାପକ୍ଷର ଅବସ୍ଥା କଥା ବରପକ୍ଷ କାହିଁକି ବିଚାରିବ ? ଦବା ନବାଟା କନ୍ୟାପିତାଙ୍କ ସମ୍ବଳଠାରୁ ବରର ଯୋଗ୍ୟତା ଉପରେ ଅଧିକ ନିର୍ଭର କରେ । ମୋ ପୁଅ ଉ. ଏସ୍. ସି । କାର୍‌ଟାଏ ନ ଦେଲେ ଆମ ସମ୍ମାନ ରହିବ କେମିତି ?

ନୀଳକଣ୍ଠ ଭାବୁଥିଲେ—ଉମାଶଙ୍କରୀଙ୍କର ପ୍ରତ୍ୟେକଟି ଶବ୍ଦ ଯେମିତି ତାଙ୍କୁ ଉପହାସ କରୁଛି—ପଚିଶ ବର୍ଷ ତଳେ ଘଟିଥିବା ଘଟଣାର ପୁନରାବୃତ୍ତି ।

ଉମାଶଙ୍କରୀ କହିଲେ—ସମୁଦ ! ତମେ କଣ ଭୁଲିଗଲ···

···ଆଉ !—ନୀଳକଣ୍ଠ ହଠାତ୍ କହିଉଠିଲେ—ଆଉ ସମୁଦ୍ଧୁଣୀ ! ସେ ସବୁ କଥା କହି ମୋତେ ଆଉ ଲଜ୍ଜିତ। କରନାହିଁ । ମୁଁ ବରଂ କାର୍‌ଟାଏ ଦେବି, ହେଲେ ସହିବା ··

ଉମାଶଙ୍କରୀ କହିଲେ—ବିବାହ ଦବା ପରେ କିଛି ସମୟ ନବାରେ ମୋର ଆପତ୍ତି ନାହିଁ, କିନ୍ତୁ ବିବାହ ଚେଷ୍ଟା ହୁଏ ଯେମିତି ।

ମାସେ ସମୟ ମିଳିଥିଲା ।

ତାଙ୍କର ଯାହା ଉଦ୍ଦେଶ୍ୟ ଥିଲା ଏ ବିବାହରେ ତାହା କଣ ସାଧିତ ହେଲା ? ଭବିଷ୍ୟତରେ କଣ ହୋଇ ପାରିବ ? ଉମାଶଙ୍କରୀ ତାଙ୍କର କିଏ ? ଏକ ଭ୍ରାନ୍ତ ଦୁର୍ବଳତାକୁ ମନ ଭିତରେ ସ୍ଥାନ ଦେଇ ସେ କାହିଁକି ଏତେ ଦିନ ଜୀବନ୍ତ ଦଗ୍ଧ ହେଲେ ! ତାଙ୍କର ମହତ୍ତ୍ୱ କିଏ ବା ବୁଝିଲା ? ଯାହାପାଇଁ ଏ ପ୍ରାୟଶ୍ଚିତ୍ତ, ସେ ତ ଆଜ

ସେଦିନର ଅନୂଢ଼ା କନ୍ୟା ନୁହେଁ । ସେ ଆଜି ମା' । ସେ ଆଜି ଶାଶୂ । ସେ ଆଜି ସମ୍ପୂର୍ଣ୍ଣ ଭିନ୍ନ ଏକ ମଣିଷ ।

ଗୃ' ନେଇ ଲୀଳାବତୀ ନିଜେ ପହଞ୍ଚିଲେ । ନୀଳକଣ୍ଠ ଶୋଇବା ସ୍ଥାନରୁ ଉଠି ଗ୍ଲୁ' କପଟା ନେଇ ଢୋକ୍ ଢୋକ୍ କରି ପିଇଗଲେ ।

ମନ୍ଦିରରେ ଆରତି ସମୟ ହୋଇଆସିଲାଣି । ସ୍ୱଶିଦନ ହେଲା ସେ ମନ୍ଦିର ଯାଇନାହାନ୍ତି—ଆଜି ଯିବେ । ସେଇଠି ନିରୋଳାରେ କିଛି ସମୟ ବସି ଭାରାକ୍ରାନ୍ତ ମନଟାକୁ ଲାଘବ କରିବେ ଆଉ ଠାକୁରଙ୍କ ନିକଟରେ ପ୍ରାର୍ଥନା କରିବେ—ହେ ଶ୍ୟାମସୁନ୍ଦର ମହାପ୍ରଭୁ ! କେତକୀକୁ ସୁଖୀ କର ।

□□□

# ଛଅ

ଆରପାଖର ବିଧବା ଝିଅ ଚଉଦବର୍ଷିଆ କନକ ଏକ ମହାସମସ୍ୟା ସୃଷ୍ଟି କରି ବସିଚି । ବ୍ରାହ୍ମଣଘରର ବିଧବା ଝିଅ ହୋଇ ବି କାଲି ରାତିରେ ମାଛଭଜା ଖାଇଦେଇଚି । ଚୋରୀ ଧରାପଡ଼ିଗଲା । ଧରାପଡ଼ିଯିବା ପରେ ନିଜର ମା' ଏଇ ଛୋଟ ଝିଅଟାକୁ କାଠଫାଳିଆରେ ପିଟି ପିଟି ରକ୍ତାକ୍ତ କରିଦେଇଚି । ଆଉ ଏଇ ପିଟିବା ବେଳେ ଶ୍ୱଶୁର ବୁଢ଼ା ଉପସ୍ଥିତ ରହି ପାଟିକରୁଥିଲେ—ପିଟ୍, ପିଟ୍, ଆହୁରି ପିଟ୍ ବୋହୂ ! ପିଟି ପିଟି ଏ ହାରାମଜାଦୀକୁ ଶେଷ କରିଦେ । ଶ୍ୱଶୁରକୁଳ ଖାଇଥିଲା—ପୁଣି ତାର ଏ ମହାପାତକରୁ ପିତୃକୁଳ ବି ଧ୍ୱଂସ ହେବ । ଘୋର କଳି, ଘୋର ଅନାଚାର । ଆଉ ଶାସ୍ତ୍ରରେ ଟିକିଏ ରହିହେବନି । ହରି ହେ ଭଗବାନ ! ହେ ଶ୍ୟାମସୁନ୍ଦର ମହାପ୍ରଭୁ ! ମୋତେ ତମ ପାଖକୁ ନେଇଯାଅ ।

କନକ ଧକେଇ ଧକେଇ କାନ୍ଦୁଥିଲା । ମା' କହୁଥିଲା—ଯା, ବେକରେ ଦଉଡ଼ି ଦେଇ ମରିବୁ ଯା । ମାଛ ଖାଇଲୁ, ବିଷ୍ଠା ଖାଇଲୁନି ।

ଧନ୍ୟରେ ମା' ! ତମେ ଦରବୁଢ଼ୀ ହୋଇ ନିତି ଏ ଓଳି ସେ ଓଳି ଆରାମରେ ମାଛ ଖାଇ, ମୁଣ୍ଡରେ ଚେକାଏ ସିନ୍ଦୂର ଟୋପା ମାରି ସଧବାର ଗୌରବ ପାଉଥିବ; ଆଉ ଏଇ ନାବାଳିକା ଝିଅଟା ଧଳା ଥାନ ପିନ୍ଧି, ପିଆଜ-ରସୁଣ-ବିବର୍ଜିତ ନିରାମିଷ ଖାଦ୍ୟ ଖାଇ ଆଗାମୀର ଦୀର୍ଘ ଜୀବନଟାକୁ ଜାଳି ପୋଡ଼ି ଛାରଖାର କରୁଥିବ ! ଆଉ ଏଇ ସମାଜପଣ୍ଡାମାନେ ସବୁପ୍ରକାର ଚର୍ବ୍ୟଚୋଷ୍ୟ ଆରାମରେ ଉଦରସ୍ଥ କରି ସମାଜର ନୀତି-ନିୟମକୁ ନିୟନ୍ତ୍ରଣ କରୁଥିବେ ! ଏ ଭଣ୍ଡାମି ଆଉ କେତେ ଦିନ ଚାଲିବ ?

କନକର ଏଇ ଜେଜେବାପା ନିଜର ଜୀବଦଶାରେ କଣ ନ କରିଚନ୍ତି ! ଗାଁରେ କିଏ ନ ଜାଣେ, ଷାଠିଏ ବର୍ଷ ବୟସରେ ସେ ଗାଁର ଏକ ପ୍ରୌଢ଼ା ବିଧବାକୁ ଦ୍ୱିପ୍ରହରର ଖରାବେଳେ ଆମ୍ବତୋଟା ଭିତରେ ବଳପ୍ରୟୋଗ କରିଥିଲେ । ତଥାପି ସେ ଗାଆଁର ମୁଖିଆ । ଗାଁର ସମସ୍ତେ ଭଲମନ୍ଦରେ ତାଙ୍କର ପରାମର୍ଶ ନିଅନ୍ତି । ନିଜ କୃତ ପାପକର୍ମର ପ୍ରାୟଶ୍ଚିତ୍ତବିଧାନ ପାଇଁ ଲୋକେ ତାଙ୍କର ପାଖକୁ ଧାଆଁନ୍ତି । ସେ ସେଥିପାଇଁ ନ୍ୟାଯ୍ୟ ଅର୍ଥ ଗ୍ରହଣ କରନ୍ତି ତାହା ନୁହେଁ, ଦ୍ରବ୍ୟ ଆକାରରେ ଯେ ଯାହା ଦିଅନ୍ତି ତାକୁ ସାଦରେ ଗ୍ରହଣ କରି ଡାକପକାନ୍ତି—ବୋହୂମା, ଟିକିଏ ଏ ଆଡ଼େ ଆସ ।

ବୋହୂ ମା' ଏ ତାକର ତାତ୍ପର୍ଯ୍ୟ ବୁଝିପାରନ୍ତି । ସ୍ୱାତେ ଲମ୍ବର ଓଡ଼ଣା ଟାଣି ଆସି ଦଉଦ୍ରବ୍ୟକୁ ନେଇଯାଆନ୍ତି । ବୁଢା ତା'ପରେ ଫାଙ୍କ୍ଲା ପାଟି ଭିତରକୁ ପ୍ରତିମିନିଟରେ ପାନଖଣ୍ଡେ ଦେଇ ଦେଇ କାଗଜ କଲମ ଧରି ପ୍ରାୟଶ୍ଚିତ୍ତର ବିଧାନ ଲେଖିବସନ୍ତି । ସମସ୍ତଙ୍କ ପାଇଁ ସମାନ ବ୍ୟବସ୍ଥା ହୁଏ ନାହିଁ । ପାପର ପରିମାଣ ଅନୁଯାୟୀ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା । ଏବେ ଜନକ ଘରେ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା । ଅବଶ୍ୟ ଏ ବ୍ୟବସ୍ଥାରେ ଲମ୍ବା ତାଲିକା ନାହିଁ—'ବସ୍ତ୍ରଂ ଅଭାବେ ସୂତ୍ରଂ ଦଦ୍ୟାତ୍' ଭଳି ।

ମନ୍ଦିରରେ ପ୍ରାୟଶ୍ଚିତ୍ତ-ପୂଜା ସରିଯିବା ବେଳକୁ କନକର ଶାଶୁଘରୁ ଲୋକ ଆସି ପହଞ୍ଚିଛନ୍ତି । କାଲି ରାତିରେ ତା' ଶ୍ୱଶୁରଙ୍କର କାଳ ହୋଇଯାଇଛି, ବୋହୂକୁ ନେବା ପାଇଁ ଶାଶୁ ଲୋକ ପଠାଇଛନ୍ତି । ଏତେ ବଡ଼ ବିପତ୍ତିରେ କୁଳର ବୋହୂଟା ନ ଯିବ ବା କେମିତି ? ପ୍ରାୟଶ୍ଚିତ୍ତ ସାରି ବୁଢ଼ା ଠାକୁରଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରି ପ୍ରାର୍ଥନା କରିଥିଲେ—ହେ ଠାକୁରେ, ଏ ଗନ୍ଧକୁ ଶୀଘ୍ର ବିଦାକର । ଠାକୁରେ ତାଙ୍କର ପ୍ରାର୍ଥନା ଶୁଣିଛନ୍ତି । ତେଣୁ ସେହିଦିନ ହିଁ କନକକୁ ଶାଶୁଘରକୁ ପଠାଇବାର ବ୍ୟବସ୍ଥା ହୋଇଗଲା । ଶାଶୁଘରକୁ ଯିବା ପୂର୍ବରୁ ଲବଣ୍ୟ ନାନୀ ସହିତ ସାକ୍ଷାତ କରିଯିବା ପାଇଁ କନକ ଆସିଛି ।

କନକ ବିଷୟରେ ବାପୁ ମୁହଁରୁ ଲବଣ୍ୟ କିଛି କିଛି ଜାଣିଛି । ସେଇ ମାଛ ଖାଇ ପ୍ରହାରିତ ହେବା ଘଟଣା ତାକୁ ଜଣାଥିଲା । ମାତ୍ର ଶାଶୁଘରକୁ ଯିବା କଥାଟା ଏକଦମ୍ ଅକସ୍ମାତ୍ ।

କନକ କଣ ପାଇଁ ଶାଶୁଘରକୁ ଯିବ ? କେଉଁ ସୁଖ ତା' ପାଇଁ ସେଠି ଅପେକ୍ଷା କରି ରହିଛି ? ସ୍ୱାମୀ ନଥିବା ଶାଶୁଘରଟା ସ୍ତ୍ରୀମାନଙ୍କ ପକ୍ଷେ ନର୍କପୁରୀ ।

କନକର ମୁହଁ ଦେଖି ଲବଣ୍ୟର ମୁହଁ ମଧ୍ୟ ଛଳଛଳ ହୋଇଗଲା । ଖବରଟା ଶୁଣି ଲବଣ୍ୟ କହିଲା—ସ୍ୱର୍ଗ୍ୟକୁ ଆଦରି ଚାଲିଯିବାର ଅବସ୍ଥାଟା ଆଉ ବେଶି ଦିନ ନୁହେଁ କନକ ! ତୁ ଯା', ମୋତେ ନିୟମିତ ଚିଠି ଦେଇ ତୋ ଅବସ୍ଥା ଜଣାଉଥିବୁ ।

କନକ କହିଲା—ନାନୀ ! ବାପା, ମା, ଶାଶୁ, ଭାଇ, ଦିଅର, ନଣନ୍ଦ ସବୁ ଥାଇ ବି ସଂସାରରେ ମୋର କେହି ନାହିଁ । ଏଇ କେଇଟା ଦିନରେ ତମେ ମତେ ସ୍ନେହରେ ବାନ୍ଧିଦେଇଚ । ତମକୁ ମୁଁ ନିଶ୍ଚୟ ଚିଠି ଦେବି । ବିପଦ-ଆପଦରେ ତମ ପରାମର୍ଶ ଲୋଡ଼ିବି ।

'ହଁ' କହି ଲବଣ୍ୟ କନକ ସହିତ ତାଙ୍କ ଘର ପର୍ଯ୍ୟନ୍ତ ଗଲା । ଯିବାପାଇଁ ସବାରି ପ୍ରସ୍ତୁତ ହୋଇ ଦାଣ୍ଡଦୁଆରେ ଠିଆହୋଇଥିଲା । ମା' ହଠାତ୍ ଝିଅ ଶାଶୁଘରକୁ ଯିବାର କାନ୍ଦଣାଟା କାନ୍ଦିଉଠିଲା ।

ଲାବଣ୍ୟ କହିଲା—ସନାମା' ଖୁଡ଼ୀ, ଥାଉ । ତୁମ ଶାସ୍ତ୍ରରେ ତ ଅଛି, ଝିଅ ଜନମ ଶାଶୁଘରକୁ—ଦୁଃଖ କଲେ କଣ ହବ ?

ଧୀରେ ଧୀରେ କନକର ସବାର ଅଦୃଶ୍ୟ ହୋଇଗଲା । ତା ସହିତ ବନ୍ଦ ହୋଇଗଲା ମାଆର କାନ୍ଦଣା । ଲାବଣ୍ୟକୁ ଘର ଭିତରକୁ ଡାକିନେଇ ସନାମା' ଖୁଡ଼ୀ ବସେଇଲା । କଥା ହବା ଭିତରେ ଆରଘରୁ ଶ୍ୱଶୁର ପଚାରିଲେ—କିଏ ଆସିଚି କିଲୋ ବୋହୂ ? କାହା ସାଙ୍ଗରେ କଥା ହଉଚୁ ?

"ତମ ବଲଦ ନାତୁଣୀ ଆସିଚି ବାପା !"—ସନାମା' ଖୁଡ଼ୀ ପାଟିକରି ଶ୍ୱଶୁରଙ୍କୁ ଜଣାଇଦେଲା ।

ବୁଢ଼ା ଘରଭିତରୁ ଉଠିଆସିଲେ । ବଲଦ ନାତୁଣୀକି ଚାହିଁ କହିଲେ—ଘରେ କିଛି ଛୁଆଁ ଛୁଇଁ କରିବୁନି । ତୁ ତ ସାଇବ ଦେଶକୁ ଯାଇ ଜାତିପତି ସବୁ ଖାଇଛୁ ।

ଲାବଣ୍ୟ କହିଲା—ଆଚ୍ଛା, ବୁଢାବାପା, ତମେ ତ ସବୁ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା କରୁଚ—ମୋ ପାଇଁ କିଛି କରୁନ ?

ବୁଢ଼ା କହିଲେ—ବାପାକୁ କହ, ପ୍ରାୟଶ୍ଚିତ୍ତ ସେ କରୁ ।

ଲାବଣ୍ୟ କହିଲା—ମୋର କୋଉ ଗରଜ ପଡ଼ିଚି ଯେ ମୁଁ କରିବି ? ତମେ ଯୋଉମାନେ ମୋ ହାତରୁ ପାଣି ଛୁଉଁନାହଁ, ପ୍ରାୟଶ୍ଚିତ୍ତ କରିବାଟା ତମର ଦରକାର ।

ବୁଢ଼ା କହିଲେ—ଆଲୋ, ତୁମ ଘରେ ତୋ ବାପା ମା' ଠାକୁମା' ସବୁ ତୋ ହାତରୁ ପାଣି ଛୁଉଁଛନ୍ତି ?

ଲାବଣ୍ୟ କହିଲା—ନ ଛୁଇଁଲେ ମୋର କଣ ଯାଏ ଆସେ ? ଯେ ପାଣି ନ ଛୁଇଁବ ଶୋଷରେ ତା ତଣ୍ଟି ଶୁଖିଯିବ—ମୋର କଣ ହେବ ?

ଏ ସମ୍ପର୍କୀୟଙ୍କ ଆଲୋଚନାଟା ଲାବଣ୍ୟକୁ ଭଲ ଲାଗୁ ନଥିଲା । ଏଣେ ସନ୍ଧ୍ୟା ହୋଇଆସିଲାଣି । ସେ ଉଠିଆସିଲା । ଦାଣ୍ଡ ଆଗଦେଇ ଘରକୁ ଯିବାବେଳେ ତାଙ୍କ ଦାଣ୍ଡ ସାମନାରେ ଶ୍ରୀକାନ୍ତକୁ ବୁଲୁଥିବାର ଦେଖିଲା । ଲାବଣ୍ୟ କଥା ନକହି ଚାଲି-ଯାଉଥିଲା । ଶ୍ରୀକାନ୍ତ କହିଲା—ଠିଆହୁଅ ।

ଲାବଣ୍ୟ ଠିଆହୋଇଗଲା । ଶ୍ରୀକାନ୍ତ କହିଲା—ବାପଘରକୁ ଆସି ପୂରାପୂରି ଅଲଗା ମଣିଷ ହୋଇଗଲ ଯେ ! ମୁଁ ଯେ ଗୋଟେ ଲୋକ ଏକାଟିଆ ଏକାଟିଆ କି କଷ୍ଟ ପାଉଛି ସେ ଖବର କିଛି ରଖିଛ ?

ଲାବଣ୍ୟ କହିଲା—ରାଗ କରୁଚ ? ବାପଘରେ ଝିଅକୁ ତ ଏମିତି ଚଳିବାକୁ ପଡ଼େ । ଏଇଟା ତ ଆମ ଭୁବନେଶ୍ୱର ବସା ନୁହଁ । ଗାଁ କଥା—ଗାଁର ଚଳଣି ଭିନ୍ନ । ଏଠି ଝାଳ ଟୋପେ ପଡ଼ିଗଲେ ତାଳଟାଏ ପଡ଼ିଲାଭଳି ଜଣାପଡ଼େ ।

ଶ୍ରୀକାନ୍ତ କହିଲା—ଗାଁ ବୁଲ ଏତକ ଥାଉ । କାଲି ସକାଳେ ଯିବା ବ୍ୟବସ୍ଥା କର ।

ଲବଣ୍ୟ କହିଲା—ବାପା କହୁଥିଲେ ଆଉ ଦ'ଦିନ ରହିବାକୁ । କାଲି ତ ଗୁରୁବାର—ଗୁରୁବାରେ କ'ଣ ବାପଘରୁ ଛାଡ଼ିବେ ? ବରଂ ପଅରଦିନ ଶୁକ୍ରବାର···

ଶ୍ରୀକାନ୍ତ ଆଉ କିଛି କହିଲା ନାହିଁ । ଲବଣ୍ୟ ପଚାରିଲା, ଚା' ଖାଇଲଣି ନା ?

—ନା ।

ଲବଣ୍ୟ କହିଲା—ଅପେକ୍ଷା କର, ମୁଁ ନିଜେ ଚା' ନେଇ ଆସୁଚ ।

ଲବଣ୍ୟ ରୋଷେଇଘରକୁ ଯାଇ ନିଜେ ଚା' କରି ଆଣିବ ବୋଲି ଭାବୁଥିଲା, ମାତ୍ର ପର ମୁହୂର୍ତ୍ତରେ ତାର ମନେପଡ଼ିଲା—ରୋଷେଇଘର ଭିତରକୁ ଯିବାକୁ ତାକୁ ନିଷେଧ କରାଯାଇଚ । ପୁଣି ରୋଷେଇଘର ମୁହଁକୁ ଲାଗି ଜେଜେମା' ବୁଢ଼ୀ ବସିଛନ୍ତି । ଲବଣ୍ୟକୁ ଦେଖି କହିଲେ—କୁଆଡ଼େ ପଶିଯାଉଛୁ ?

ଲବଣ୍ୟ କହିଲା—ମା'କୁ ଖୋଜୁଛୁ । ମା' କାହିଁ ?

ଆର ପାଖରୁ ଲୀଳାବତୀଙ୍କ ପାଟି ଶୁଭୁଥିଲା ।

ଲବଣ୍ୟ ଯାଇ କହିଲା—ମା', ମତେ ତ ରୋଷେଇ ଘରକୁ ଯିବାକୁ ମନା କରିଚ । ଗୋଟେ ଲୋକ ଯେ ଏପର୍ଯ୍ୟନ୍ତ ଚା' କପେ ଖାଇନି, କେହି ସେ କଥା ବୁଝୁଚ ?

ବାପା ମନ୍ଦିରରୁ ଫେରୁଥିଲେ । ଏକଥା ଶୁଣି ଠିଆହୋଇଗଲେ । କହିଲେ— କ'ଣ କହିଲୁ ଝିଅ, ତୋତେ ରୋଷେଇଘରକୁ ଯିବାକୁ ମନାକରାଯାଇଛି ! କିଏ ମନା କରିଛି ?

ଲବଣ୍ୟ ଆଉ ଲୀଳାବତୀ ଚୁପ୍ ।

ନୀଳକଣ୍ଠ ପୁଣି ସ୍ତ୍ରୀଙ୍କୁ ଲକ୍ଷ୍ୟକରି କହିଲେ—ରୋଷେଇଘରକୁ ଯିବାକୁ ଲବଣ୍ୟକୁ କିଏ ମନାକରିଛି ?

ନୀଳକଣ୍ଠଙ୍କ କଥାର ଢଙ୍ଗରେ ଲୀଳାବତୀ ଡରିଗଲେ । ସେ କିଛି କହିବା ପୂର୍ବରୁ ବୁଢ଼ୀ ଆସି କହିଲେ—ମୁଁ ତାକୁ ମନା କରିଛି । ବାରଆଡ଼େ ବୁଲି ବାରଜାତ ହାତରୁ ଖାଇ ଆମ ରୋଷେଇଘରେ ପଶିଲେ ପିତୃପୁରୁଷ ଆଉ ଏ ଘରୁ ପାଣି ଛୁଇଁବେ ?

ନୀଳକଣ୍ଠ କହିଲେ—ମୋ ହାତରୁ ଯଦି ସେମାନେ ପାଣି ଖାଇବେ ତା' ହାତରୁ ନଖାଇବେ କାହିଁକି ?

ବୁଢ଼ୀ କହିଲେ—ତୁ ଗାଁକୁ ଆସି ସେ ପ୍ରାଚିତ କଲୁ । ଆଉପାଖ ଦେବଶୁନ୍‌କୁ ଡାକ ପ୍ରାଚିତ ବେବସ୍ଥାଟା କରେଇଦଉନୁ ।

ପ୍ରାୟଶ୍ଚିତ୍ତ ! ହଁ, ନୀଳକଣ୍ଠଙ୍କୁ ଆସି ଏଠାରେ ସସ୍ତ୍ରୀକ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିଥିଲା । କିନ୍ତୁ ତା ବୋଲି ଝିଅ-ଜ୍ୱାଇଁ ଆସି ତାଙ୍କ ଘରେ ପ୍ରାୟଶ୍ଚିତ୍ତ କରିବେ କାହିଁକି ?

ସେ ପୁଣି କହିଲେ—ଠିକ୍ ଅଛୁ । ଲାବଣ୍ୟ ରୋଷେଇଘରକୁ ଗଲେ ପିତୃ-ପୁରୁଷ ଯଦି ପାଣି ନ ଛୁଇଁବେ, ସେ ରୋଷେଇ ଘରକୁ ନ ଗଲେ ମୁଁ ଏଘରୁ ପାଣି ଛୁଇଁବି ନାହିଁ ।

ଏତକ କହି ଦ୍ରୁତ ପଦକ୍ଷେପରେ ସେ ପ୍ରସ୍ଥାନ କଲେ । ଦୋତାଲା ଉପରକୁ ଦୁମ୍ ଦୁମ୍ କରି ଉଠିଗଲେ ।

ଏଣେ ବୁଢ଼ୀ ମଧ୍ୟ ଲୀଳାବତୀଙ୍କୁ ବୁଝେଇଦେଲେ—ଲାବଣ୍ୟ ଏ ଘରେ ଥିବା ପର୍ଯ୍ୟନ୍ତ ସେ ଆଉ ଏ ଘରେ ପାଣି ଛୁଇଁବେ ନାହିଁ ।

ଲୀଳାବତୀ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ଅନେକ ବେଳ ଠିଆହୋଇ ରହିଲେ । ଲାବଣ୍ୟ ମଧ୍ୟ ସେଇଠି ସେମିତି କାଠପିତୁଳାଟେ ପରି ଠିଆ ହୋଇ ରହିଥିଲା । ବୁଢ଼ୀ ଯାଇ ତାଙ୍କ ଗମ୍ଭିଖ ଘରେ ମୁହଁ ଜାକି ଶୋଇପଡ଼ିଲେ ଭିତରୁ କବାଟ ବନ୍ଦକରିଦେଇ ।

ଖ' ତ ଦୂରର କଥା, ରାତିରେ ରୋଷେଇ ବନ୍ଦ । ସାରାରାତି କାନ୍ଦି କାନ୍ଦି ଲାବଣ୍ୟର ଦୁଇ ଆଖି ସକାଳକୁ ଫୁଲିଯାଇଥିଲା । ରାତି ନ ପାହୁଣୁ ସେ ଉଠି ଦାଣ୍ଡ-ଘରକୁ ଯାଇ ବାହାରୁ କବାଟ ଖଡ଼ଖଡ଼ କଲା । ଶ୍ରୀକାନ୍ତ ଉଠିବାରୁ ତାକୁ କହିଲା—ଶୀଘ୍ର ବାହାରିପଡ଼, ଆଜି ଚାଲିଯିବା ।

ଶ୍ରୀକାନ୍ତ ତ ତାହା ହିଁ ଚାହୁଁଥିଲା । ଲାବଣ୍ୟର ଚେହେରା ଦେଖି ଅନୁମାନ କରିନେଲା—ରାତିରେ ନିଶ୍ଚୟ କିଛି ଉତ୍ପାତ କାଣ୍ଡ ଘଟିଯାଇଛି, ଯାହା ଫଳରେ ସାରା ରାତିଟା ତାକୁ ଖାଡ଼ା ଖାଡ଼ା ଉପବାସରେ ରହିବାକୁ ପଡ଼ିଛି ।

ଗୁରୁବାର । ଗାଧୁଆପାଧୁଆ ନାହିଁ, କାହାରିକୁ କୁହାବୋଲା ନାହିଁ, ଲାବଣ୍ୟ ବାହାରିପଡ଼ିଲା ଜିନିଷପତ୍ର ସବୁ ଜିପ୍‌ରେ ଲଦି । ମା' ଚାହିଁ ଚାହିଁ ସବୁ ଦେଖୁଥିଲେ; କିନ୍ତୁ କିଛି କହିପାରୁନଥିଲେ । ବାପା ଭାବୁଥିଲେ—ନାଃ, ତାକୁ ଆଉ ଅଟକେଇ ଲାଭ ନାହିଁ ।

ବୁଢ଼ୀ ଘରୁ ବାହାରିପଡ଼ି କଟାଘା'ରେ ଚୂନ ଲେପିଦେଲେ ।

—ଏଠି ଆସି ସମସ୍ତଙ୍କ ଲାଡପଣ ତ ନେଇଥିଲା, ଗୁରୁବାରରେ ଘରୁ ବାହାର ଏ ଘରଟାକୁ ଲକ୍ଷ୍ମୀଛଡ଼ା କରି ଦେଇ ଯାଉଚି । କେବେ ତାର ଭଲ ଫଳ ହେବନାହିଁ । ପ୍ରଭୁ ହେ, ଏ ଅନ୍ୟାୟ ପାଇଁ ତାକୁ ହାତେ ହାତେ ଶାସ୍ତି ଦିଅ !

ଦୁଇହାତ ମୁଣ୍ଡରେ ଲଗାଇ ବୁଢ଼ୀ ଏହିପରି କାମନା କରୁଥିଲେ ! ଉଭୟ ଶ୍ରୀକାନ୍ତ ଓ ଲବଣୀ ଆସି ତାଙ୍କୁ ମୁଣ୍ଡିଆ ମାରିଲେ । ବୁଢ଼ୀ ରାଗରେ ମୁହଁ ବୁଲାଇ ନେଲେ । ଲୀଳାବତୀଙ୍କ ଆଖିରୁ ଠପ୍ ଠପ୍ ଲୁହ ଝରିପଡ଼ିଲା । ଇଚ୍ଛାହେଉଥିଲା—ଯେତେ ଯାହାହେଲେ ବି ଝିଅ ଜ୍ୱାଇଁଙ୍କ ଆଗରେ ଯାଇ ବାଟ ଓଗାଳିବେ । କହିବେ—ବୁଢ଼ୀ ହେଇଥିବା ଯୋଗୁଁ ତାଙ୍କ ମୁଣ୍ଡ ଆଉ ଠିକ୍ ନାହିଁ । ତାଙ୍କ କଥାକୁ ଧରି ଗୁରୁବାରରେ ଘରୁ ଗୋଡ଼ କାଢ଼ି ଗଲେ ଖାଲି ପିତୃକୁଳ ନୁହେଁ, ଉଭୟ କୁଳର ଅମଙ୍ଗଳ ।

ସେ କିନ୍ତୁ କିଛି କହିପାରିଲେନି ।

ଆଉ ନୀଳକଣ୍ଠ ?

ଝିଅ-ଜ୍ୱାଇଁ ମୁଣ୍ଡିଆ ମାରନ୍ତେ ଆଶୀର୍ବାଦ କରି କହିଲେ—ଆୟୁଷ୍ମାନ୍ ହୁଅ ! ସୁଖୀ ହୁଅ !

ପୁଣି ସେଇ ନାଲିଗୋଡ଼ି ରାସ୍ତାରେ ନାଲି ଧୂଳି ଉଡ଼ାଇ ଜିପ୍ ଚାଲିଗଲା ।

କେତକୀ ନାହିଁ । ଲବଣୀ ଚାଲିଗଲା । ଘରଭିତରେ ବିରାଟ ଶୂନ୍ୟତା ।

ନୀଳକଣ୍ଠ, ଲୀଳାବତୀ ଉଭୟେ, ଆଗରୁ ଏ ପ୍ରକାର ଶୂନ୍ୟତା କେବେ ଅନୁଭବ କରି ନଥିଲେ । ନୀଳକଣ୍ଠଙ୍କ ମୁହଁର ହସ ଚିରଦିନ ପାଇଁ ଯେମିତି ଉଭେଇଗଲା ।

ଇସ୍ ! ଜୀବନରେ ଆଉ କ'ଣ କେବେ ସେ ମୁଣ୍ଡ ଉପରକୁ କରିପାରିବେ ? ସାଧାରଣ ଜୀବନକୁ ସେ ଜଳାଞ୍ଜଳି ଦେଇଛନ୍ତି । ସାମାଜିକ ଜୀବନ ବିପର୍ଯ୍ୟସ୍ତ ହେଇ-ଥିଲା, ଆଉ ଆଜି ପାରିବାରିକ ଜୀବନଟା ଖଣ୍ଡ ଖଣ୍ଡ ହେଇ ଭାଙ୍ଗିପଡ଼ିଲା । ଭବିଷ୍ୟତ ଯେମିତି ଅନିଶ୍ଚିତ ଯେମିତି ଭୟଙ୍କର । ତାଙ୍କ ଆଖି ଆଗରେ ଭାସିଗଲା ମୃତ ଜ୍ୟେଷ୍ଠ ଭାଇର ପିଲାମାନଙ୍କର ମୁହଁ । ଅଭିଭାବକଶୂନ୍ୟ ସେଇ ପିଲାମାନଙ୍କ ପ୍ରତି ତାଙ୍କର କିଛି କର୍ତ୍ତବ୍ୟ ଅଛି ! କ'ଣ ସେ କର୍ତ୍ତବ୍ୟ ? ସମସ୍ତ ପୈତୃକ ସମ୍ପତ୍ତି ସେମାନଙ୍କୁ ଦେବା ଛଡ଼ା ଆଉ କ'ଣ ତାଙ୍କର ଦାୟିତ୍ୱ ?

ସାନଭାଇର ଝିଅ ନାହିଁ, ତେଣୁ ବାହା ଦବାର ଜଞ୍ଜାଳ ନାହିଁ । ଦୁଇଟି ପୁଅ । ସବା ବଡ଼ଟି କୋଡ଼ିଏ ବର୍ଷର । ମେଟ୍ରିକ୍ ଦୁଇଥର ଫେଲହେଇ ପଢ଼ା ବନ୍ଦରେ ତୋରି ବାନ୍ଧିଦେଇଚି । ଆଉ ଦୁଇଜଣଙ୍କର ସେମିତି ପାଠପର ଶୂନ୍ । ଘରଓ ଜମିବାଡ଼ ସାଙ୍ଗରେ ଅଛି, କିନ୍ତୁ ସେମାନଙ୍କ ଚେଷ୍ଟେଇ ଅଲଗା । ସାନଭାଇର ଜୀବିତା-

ବସ୍ଥାରୁ ଏ ବ୍ୟବସ୍ଥା । ସମୁଦାୟ ତିରିଶ ମାଣ ଜମିରୁ ସାନ ଅଂଶର ଦଖଲରେ ଅଛି ପ୍ରାୟ ଅଠରମାଣ । ଆଉ ବାରମାଣ ଜମି 'ନୀଳକଣ୍ଠ ଚଷୁଛନ୍ତି । ସେଇ ବାରମାଣ ବା ନୀଳକଣ୍ଠଙ୍କ ଅଂଶରେ ଯାହା କିଛି ପ୍ରାପ୍ୟ, ସେ ସବୁକୁ ସେ ପୁତୁରାମାନଙ୍କ ନାଁରେ କରିଦେବେ ?

କିନ୍ତୁ ସାନ ଭାଇଙ୍କ ପାଇଁ କାହିଁକି ଯୌତୁକର ବ୍ୟବସ୍ଥା ? ସେ ବ୍ୟବସ୍ଥା ହେବ କେମିତି ? ମାସକ ଭିତରେ ନ ହେଲେ କେତକୀ ଆଉ ବାପଘର ମୁହଁ ଦେଖିବ ନାହିଁ । ନ ଦେଖୁ । ନୀଳକଣ୍ଠଙ୍କ ଜୀବନରେ ଆଉ କାହାରି ପ୍ରୟୋଜନ ନାହିଁ; ମାତ୍ର କେତକୀ ନ ଆସିବାଟା ଯେତେ ଦୁଃଖଦାୟକ ହେବନାହିଁ, କାହାକୁ ନ ଦେବାଯୋଗୁଁ ସେ ଯେଉଁ ଲାଞ୍ଛନା ଭୋଗିବ, ସାରା ଜୀବନଭରି ସେ ଦୁଃଖର ଭାର ସେ ସହିପାରିବ ତ ? ବେଦି ଉପରେ କରିଥିବା ଅଙ୍ଗୀକାରଟାକୁ ସେ ଫାଙ୍କିଦେବେ କେମିତି ? ଜୀବନରେ କେବେହେଲେ ସେ ଏ ପ୍ରକାର ପନ୍ଥାର ଆଶ୍ରୟ ଗ୍ରହଣ କରି-ନାହାନ୍ତି । ନ୍ୟାୟ ପଥରେ ଚାଲିବା ପାଇଁ ସେ ଅନେକ କିଛି ତ୍ୟାଗ କରିଛନ୍ତି । ଅନେକ ପ୍ରଲୋଭନରୁ ନିଜକୁ ମୁକ୍ତ ରଖିଛନ୍ତି । ଆଜି ସେ ବସି ଭାବୁଥିଲେ, ଏତେ ସବୁ କରି ସେ ପାଇଛନ୍ତି କଣ ? ତାଙ୍କର ସହକର୍ମୀମାନେ ନିଜ ସଂପତ୍ତି କେତେ ନ ବଢ଼େଇଛନ୍ତି ! ସେମାନଙ୍କ ଭିତରୁ ଅନେକ ବି ତ ଆଜି ମଧ୍ୟ ଶାସନର ଉଚ୍ଚଶିଖରରେ ବସିରହି ତୁଙ୍ଗ ନେତା ଆଖ୍ୟା ପାଇଲେଣି । ଅଭାବରେ ଦୁଇ ଟଙ୍କା ନେବାଟା କ'ଣ ଦୁର୍ନୀତି ? ଦଳ ନାଁରେ ଅର୍ଥ ସଂଗ୍ରହ କରିବାଟା କ'ଣ ଅନ୍ୟାୟ ? ଯଦି ନୁହେଁ, ତେବେ ନୀଳକଣ୍ଠ କରିପାରିଲେ ନାହିଁ କାହିଁକି ?

ମଣିଷ ମାତ୍ରେଇ ଭିନ୍ନ । ନୀଳକଣ୍ଠ ହୁଏତ ଖୁବ୍ ବେଶି ଆଦର୍ଶବାଦୀ ଥିଲେ । ଗାନ୍ଧି-ଗୋପବନ୍ଧୁଙ୍କ ଆଦର୍ଶରେ ଖୁବ୍ ବେଶି ଅନୁପ୍ରାଣିତ ହୋଇଥିଲେ । ରାଜନୀତି ଥିଲା ତାଙ୍କ ପାଖରେ ଦେଶସେବା । କର୍ତ୍ତବ୍ୟର କଠୋରତା ହିଁ ଥିଲା ତାଙ୍କ ଆଗରେ ବିରାଟ ଏକ ବଡ଼ପ୍ରଶ୍ନ ।

ଯୁଗ ବଦଳି ଯାଇଛି । ଆମେ ତେଣୁ ଜାତିର ଜନକ ଗାନ୍ଧିଜୀଙ୍କ ପିସ୍ତଲର ଗୁଳି ଟିପି ମାରିଦେଇ ପାରିଛୁ । ରାଜନୀତିର ବେଦି ଆଜି ସ୍ୱାର୍ଥାନ୍ୱେଷୀ ମଣିଷର ମହାମିଳନ କ୍ଷେତ୍ରରେ ପରିଣତ ହୋଇଛି । ତେଣୁ ନୀଳକଣ୍ଠଙ୍କ ପରି ନିଷ୍ଠାପର ଦେଶ-ସେବୀମାନେ ରାଜନୀତି ମଞ୍ଚରେ ନିଜକୁ ଖାପ ଖୁଆଇ ନ ପାରି ପଛଘୁଞ୍ଚା ଦେଇଛନ୍ତି । ବିରାଟ ପଛଘୁଞ୍ଚା—ଆଗେଇବାର ବାଟ ଏକବାରେ ରୁଦ୍ଧ । ସଭ୍ୟତା ନାଁରେ ଯେତେ ପ୍ରକାର ଅସଭ୍ୟତା, ବର୍ବରତା । ପିଲାଦିନେ ପଢ଼ିଥିବା ଯୋଆଡ଼ଙ୍କର 'ସଭ୍ୟତା'ର ସଂଜ୍ଞା ତାଙ୍କର ମନେପଡ଼ୁଥିଲା । ନିରାପତ୍ତା, ମୁକ୍ତଚିନ୍ତା ଓ ନୈତିକ ଭାବଧାରା ବିନା ମଣିଷ ସଭ୍ୟ ହୋଇପାରେନା । ସମାଜରେ ଆଜି ସେ ନିରାପତ୍ତା କାହିଁ ?

ମଣିଷ ମନରେ ସେ ସ୍ୱାଧୀନ ଚନ୍ତା କାହିଁ—ଦେଶରେ ଆଇନର ଶାସନ କାହିଁ ? ସହରରେ ଶାନ୍ତି ନାହିଁ, ଗାଁରେ ଶାନ୍ତି ନାହିଁ—ତେବେ କେଉଁଠି ସେ ଶାନ୍ତି ?

କ'ଣ ଶଶାନରେ ? ମଣିଷ ଜୀବନରେ ଜନ୍ମ ଆଉ ଶ୍ମଶାନ-ଯାତ୍ରା ଦୁଇଟା ହିଁ କଠୋର ସତ୍ୟ । ତୃତୀୟ ସତ୍ୟ ଆଉ କ'ଣ ଅଛି ? ଏଇ ଜନ୍ମ-ମୃତ୍ୟୁର ପଥଟା ହିଁ ଅନେକ ଛନ୍ଦରେ ଭରା । ଦୁଃଖ ଆଉ ଆନନ୍ଦ ମଣିଷ ଜୀବନର ଦୁଇଟି ଅଙ୍ଗ । କାହାର ବା ଉଭୟ ଅଙ୍ଗର ସମାନ ଗଠ, ଆଉ କାହାର ବା ଅସମ୍ଭବ ଭାବରେ ଅସମ । କାହାର ବା ଜୀବନରେ ଗୋଟିଏ ଅଙ୍ଗ ଛେଦତ ହୋଇଥାଏ । ସେ ଅଙ୍ଗ ସୁଖର ବା ଦୁଃଖର ହେଇପାରେ । ନୀଳକଣ୍ଠଙ୍କ ଜୀବନରେ ସୁଖର ଅଙ୍ଗଟା ଯେମିତ ବ୍ୟାଧିଗ୍ରସ୍ତ-ହେଇ ଛୁଡ଼ିପଡ଼ିଲା । ଅସମ୍ଭବ ଯନ୍ତ୍ରଣାରେ ସେ ଛଟପଟ ହେଲେ । ରକ୍ତଚାପ ତାଙ୍କର ବଢ଼ିଗଲା ।

ଆର ପାଖ ବଡ଼ବାପାଙ୍କ ଘରୁ ଡାକରା ପାଇ ସେ ସେଠାକୁ ଗ୍ଲଲଗଲେ । ବାପ-ପୁଅ, ଅର୍ଥାତ୍ ଦାମୋଦର ଆଉ ତାଙ୍କ ବାପା ଏକାଠି ବସିଥିଲେ । ନୀଳକଣ୍ଠ ଯାଆନ୍ତେ ବୁଢ଼ା ତାଙ୍କୁ କହିଲେ—ନୀଳା, ତୁ ସହରରୁ ଫେରଆସି ପ୍ରାୟଶ୍ଚିତ୍ତ କରି ଘର ଭିତରକୁ ପଶିଥିଲୁ । ଦେଉଳକୁ ଯିବାର ଅନୁମତ ପାଇଥିଲୁ । ଆଉ ତୋ ଝିଅ ବେଳକୁ ସେ ସବୁ ନୀତ କ'ଣ ଖଟିବନାହିଁ ? ତା ପାଇଁ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା କରୁନୁ କାହିଁକ ?

ନୀଳକଣ୍ଠ କହିଲେ—ଝିଅ ତ ଗ୍ଲଲଗଲାଣି, ଏକ୍ଷଣି ଆଉ ପ୍ରାୟଶ୍ଚିତ୍ତ ବ୍ୟବସ୍ଥା କାହାପାଇଁ କରିବ ?

ଝିଅ ଗ୍ଲଲଗଲାଣି ଶୁଣି ବୁଢ଼ାଙ୍କ ଆଖି ତାଳୁକୁ ଉଠିଗଲା । ସେ କହିଲେ—ହଇରେ, ଝିଅଟା ଆସି ଗ୍ଲଲଗଲା—ତୁ ତା ପ୍ରାୟଶ୍ଚିତ୍ତ ବ୍ୟବସ୍ଥାଟା କଲୁନାହିଁ ?

ନୀଳକଣ୍ଠ ବିରକ୍ତ ହେଇ କହିଲେ—ଆଉ ଆଉ, ଆଜକାଲି ତୁଅଙ୍କୁ ପ୍ରାୟଶ୍ଚିତ୍ତ କରେଇବ ! ଶ୍ରୀକାନ୍ତର ଗ୍ଲକରି ତ ବିଦେଶରେ । କାଲି ଗୁଡ଼ି ପଅରଦନ ପୁଣି ସେ ବଲାତ ଯିବ । ସେମାନଙ୍କର ପ୍ରାୟଶ୍ଚିତ୍ତ କରି ? ସେ ଯେତେବେଳେ ମୋର ପରି ଗ୍ଲକରିରୁ ଅବସର ନେଇ ଗାଁକୁ ଆସିବ, ସେତେବେଳେ ଯାଇ ଏ ସବୁ କଥା ଉଠିବ । ଅବଶ୍ୟ ତା' ଘରଟା କଟକ ସହରରେ—ପୁଣି ସେ ଦଲ୍ଲୀର ସ୍ଥାୟୀବାସିନ୍ଦା ହେଇପାରେ । ସେମାନଙ୍କ ପାଇଁ ତମେ ଆଉ ମୁଣ୍ଡ ଖେଳାଅନାହିଁ ବଡ଼ବାପା ?

ବଡ଼ବାପା ଚୁପ୍ ରହିଲେ । ଭାବିଲେ ସଂସାରଟା ଓଲଟିଗଲାଣି; ନୋହିଲେ ଯୋଉ ନୀଳକଣ୍ଠ ସେଦନ ପଦେ କଥାରେ ପ୍ରାୟଶ୍ଚିତ୍ତ କରିଥିଲା, ସେ ଆଜ ପୁଣି ତାଙ୍କ ମୁହଁରେ ଜବାବ୍ ଦେଇ ଆଜକାଲିକା ଶାସ୍ତ୍ର ତାଙ୍କୁ ଶୁଣେଉଚ !

ସତରେ ସମସ୍ତ ବଦଳିଯାଉଚ !

ମଣିଷ ବଦଳି ଯାଉଚ ! □□□

# ସାତ

ବନସ୍ଥମାର୍ଗ ।

ଦିଲ୍ଲୀ ନଗରୀର ଅପେକ୍ଷାକୃତ ଏକ ନିର୍ଜନ ନୀରବ ନିଶବ୍ଦ ଅଞ୍ଚଳ ।

ସେଇଠି ଏକ କ୍ୱାର୍ଟରରେ ଶ୍ରୀକାନ୍ତ ଆଉ ଲାବଣ୍ୟର ବସତି ।

ସେମାନେ କଟକରେ ଗୃହରଦିନ ରହି ଭୁବନେଶ୍ୱରରୁ ଉଡ଼ାଜାହାଜ ଯୋଗେ ଦିଲ୍ଲୀ ଫେରିଆସିଛନ୍ତି । ଶ୍ୱଶୁରଘରେ ଲାବଣ୍ୟ ପାଇଁ କୌଣସି ସମସ୍ୟା ନାହିଁ । ଶାଶୁ ଶ୍ୱଶୁର ଉଭୟ ଅତ୍ୟନ୍ତ ସ୍ନେହପ୍ରବଣ । ଲାବଣ୍ୟକୁ ସେମାନେ ବୋହୂଭଳି ନ ଦେଖି ଝିଅ ଭଳି ଦେଖନ୍ତି । ଯେଉଁଦିନ ସେମାନେ କଟକରେ ପହଞ୍ଚିଲେ, ସେହିଦିନ ସନ୍ଧ୍ୟାରେ ଲାବଣ୍ୟର ଅସମ୍ଭବ ମୁଣ୍ଡ ବ୍ୟଥା ହେଲା । ଶାଶୁ ରଙ୍ଗଲତା ବୋହୂକୁ ଶୁଆଇ ତା' ମୁଣ୍ଡରେ ଅମୃତାଞ୍ଜନ ମାଲିସ୍ କଲେ । ଗୃହଦିନ ବେଶ୍ ଭଲରେ କଟିଗଲା; କିନ୍ତୁ ତା' ସତ୍ତ୍ୱେ ଲାବଣ୍ୟ ସେଠି ବି ଯେମିତି ଅନୁଭବ କଲା ଶାଶୁ ଶ୍ୱଶୁରଙ୍କ ମନରେ ସେଇ କୁଳରକ୍ଷାର ଚିନ୍ତା ଆରମ୍ଭ ହୋଇଛି ?

କୁଳରକ୍ଷା ହେବ କେମିତି ?

ଦଶଟାରୁ ପାଞ୍ଚଟା ପର୍ଯ୍ୟନ୍ତ ଶ୍ରୀକାନ୍ତର ଅଫିସ୍ । ସେଇ ସମୟଟା ଲାବଣ୍ୟକୁ ଏକା ଏକା କଟେଇବାକୁ ପଡ଼େ । ସେଇ ସମୟରେ ସେ ବୁଣାବୁଣି ଓ ପଢ଼ାପଢ଼ି କରେ; ମାତ୍ର ଏଥର ଫେରିବା ପରେ କୌଣସି କାମରେ ତାର ମନ ଲାଗୁନାହିଁ ।

ତା ମନର ସରସତା, ଓଠର ହସ ଗଲା କୁଆଡ଼େ ?

ସେଦିନ ସନ୍ଧ୍ୟାରେ ଲନ୍‌ର ଫୁଲ ବଗିଚାରେ ବସିଥିଲେ ସ୍ୱାମୀ-ସ୍ତ୍ରୀ ଦୁଇଜଣ । ଶ୍ରୀକାନ୍ତ ପଚାରିଲା—ଲାବଣ୍ୟ, ଏଥର ଫେରିବା ପରେ ତୁମର କ'ଣ ହୋଇଛି ? ଆମେ କ'ଣ ଏଇଥିପାଇଁ କେତଦିନର ବାପଘରକୁ ଯାଇଥିଲେ ?

ଲାବଣ୍ୟ ନୀରବ ରହିଛି । ତା' ଚରିତ୍ରରେ ଏ ମଧ୍ୟ ଏକ ନୂଆ କଥା । ତାର ପ୍ରଗଲ୍‌ଭତାରେ ଶ୍ରୀକାନ୍ତ ଯେଉଁ ଆନନ୍ଦ ପାଉଥିଲା, ସେ ଆନନ୍ଦରୁ ସେ ବଞ୍ଚିତ ହୋଇଛି ।

ଶ୍ରୀକାନ୍ତ ପୁଣି କହିଲା—ଆମେ ତ ବେଶ୍ ଭଲ ଅଛେ । ଜଞ୍ଜାଳ ନାହିଁ, ବନ୍ଧନ ନାହିଁ, ଏଇ ତ ବେଶ୍ ।

ତଥାପି ଲାବଣ୍ୟ ନୀରବ ।

ଶ୍ରୀକାନ୍ତ ପୁଣି କହିଲା—ଜୀବନରେ ତୁମଭଳି ସ୍ତ୍ରୀ ମିଳିବା ସୌଭାଗ୍ୟର କଥା । ତୁମର ବିବେଚନା ଶକ୍ତି, ବୁଦ୍ଧି, କର୍ତ୍ତବ୍ୟନିଷ୍ଠା, ମୋତେ ସୁଖୀ କରାଇବାର ଆଗ୍ରହ ପରିବାରରେ ଆଣିଚି ଅଖଣ୍ଡ ଶାନ୍ତି ।

ଏହା ଶ୍ରୀକାନ୍ତର ତୋଷାମଦ ନୁହେଁ, ନିଗୂଢ଼ ସତ । ଦାମ୍ପତ୍ୟ-ଜୀବନରେ କୌଣସି ଦିନ କଳହ ଦେଖାଦେଇନି । କୌଣସି ଦିନ କେହି କାହା ଇଚ୍ଛା ବିରୁଦ୍ଧରେ ଯାଇନାହାନ୍ତି । ଲାବଣ୍ୟର ଚରିତ୍ରପାଇଁ ଶ୍ରୀକାନ୍ତ ଶ୍ୱଶୁରଙ୍କୁ ଅଶେଷ ଧନ୍ୟବାଦ ଦିଏ । କୃତଜ୍ଞତାରେ ମୁଣ୍ଡ ତାର ନଇଁଆସେ । ଲାବଣ୍ୟଠାରେ ନାରୀତ୍ୱର ପୂର୍ଣ୍ଣ ବିକାଶ । ସେ ଏକ ଅପୂର୍ବ ବ୍ୟକ୍ତିତ୍ୱ । ଏଇ ବିରଳ-ବ୍ୟକ୍ତିତ୍ୱ ନିକଟରେ ଶ୍ରୀକାନ୍ତ ବେଳେବେଳେ ହାର୍ ମାନେ ।

ଶୀତପ୍ରଧାନ ପାଶ୍ଚାତ୍ୟ ଦେଶରେ ରହି ବି ଶ୍ରୀକାନ୍ତ ଆଲ୍‌କୋହୋଲ୍ ସ୍ପର୍ଶ କରେନା । ଏହା କେବଳ ଲାବଣ୍ୟ ଯୋଗୁ ହିଁ ସମ୍ଭବ ହୋଇଚି । ଇଂଲଣ୍ଡର ରାଜଧାନୀ ସୁନ୍ଦର ଲଣ୍ଡନ ନଗରୀରେ ରହି ବି ଶ୍ରୀକାନ୍ତ କେବେ ବଲ୍‌ଡେନ୍‌ସ ନାଚିନାହିଁ । ପାର୍ଟିକୁ ଯାଇଚି ଲାବଣ୍ୟ ସହିତ । ଚୁପ୍‌ଚାପ୍ ବସିରହି ଅନ୍ୟମାନଙ୍କର ଉଚ୍ଛୃଙ୍ଖଳତା ଦେଖିଚି; ମାତ୍ର ନିଜେ କେବେ ଉଚ୍ଛୃଙ୍ଖଳ ହୋଇନାହିଁ ।

ଶ୍ରୀକାନ୍ତର ଏଇ ସ୍ୱଭାବ ଦେଖି ତାର ବନ୍ଧୁମାନେ ତାକୁ 'ଫେମିନିଷ୍ଟ' ବୋଲି କହୁଥିଲେ ।

ଗାଁରେ ଜନ୍ମହୋଇ, ଭୁବନେଶ୍ୱରରେ ବଢ଼ି, ଲଣ୍ଡନ ନଗରୀରେ ନିଜକୁ ବେଶ୍ ଖାପଖୁଆଇପାରୁଥିଲା ଲାବଣ୍ୟ । ଦିଲ୍ଲୀ ଆସିବା ପରେ ବି ତା'ର ସ୍ୱଭାବର କୌଣସି ପରିବର୍ତ୍ତନ ନଥିଲା । ଶ୍ରୀକାନ୍ତର ଦିନ ବ୍ୟସ୍ତତାଭିତରେ କଟିବାକୁ ଲାଗିଲା । ଲାବଣ୍ୟ ମୁହଁରେ ହସ ଫେରେଇ ଆଣିବାପାଇଁ ସେ ଅକ୍ଲାନ୍ତ ଚେଷ୍ଟା କରୁଥିଲା । 'ଅଶୋକା' ବା 'ଆକ୍‌ବର'ରେ ଖାଇବା, 'ସ୍ୱର୍ଣ୍ଣଜୟନ୍ତୀ'ରେ ପାଖରେ ପାଖରେ ବସି ଛାୟାଛବି ଉପଭୋଗ କରିବା ଅଥବା କେତେବେଳେ ଯାଇ ରାଜଘାଟରେ ମହାତ୍ମାଙ୍କ ସମାଧିରେ ଫୁଲ ଦେବା, ନୋହିଲେ କନଟ ସର୍କସ, କେରଲ୍‌ବାଗ୍, ଜନପଥରେ ଯାଇ କଣାକଣି କରିବା—ଏହାଛଡ଼ା ଦିଲ୍ଲୀରେ ଆଉ କ'ଣ ବା ଅଛି ? ଅନ୍ୟ ଯାହା ବା ଅଛି, ସେଠାକୁ ଯିବା ନିଷେଧ । ସେଇଟା ହେଲା ବଡ଼ ବଡ଼ ସଭାସମିତିରେ ଯାଇ ଲମ୍ବା ଲମ୍ବା ଭାଷଣମାନ ଶୁଣିବା; କିନ୍ତୁ ଏଥିପାଇଁ ନା ଶ୍ରୀକାନ୍ତର ନା ଲାବଣ୍ୟର କୌଣସି ଆଗ୍ରହ ଅଛି ।

କ୍ରମଶଃ ଶ୍ରୀକାନ୍ତ ଅନୁଭବ କରୁଥିଲା ତା' ଜୀବନ ଯେମିତି ଶୁଷ୍କ-ମରୁଭୂମିରେ ପରିଣତ ହେବାକୁ ଯାଉଛି । ଲାବଣ୍ୟର କଥା-କାର୍ପଣ୍ୟ ତାକୁ ଚରମ ଆଘାତ ଦେଉଛି ।

ପ୍ରଶ୍ନ ପରେ ପ୍ରଶ୍ନ—ଅସୁମାର ପ୍ରଶ୍ନ—କିନ୍ତୁ ଉତ୍ତର ନାହିଁ ।

ଶେଷକୁ ଶ୍ରୀକାନ୍ତ ଭାବୁଥିଲା—ଲାବଣ୍ୟର କଣ ମସ୍ତିଷ୍କ-ଚିକିତ୍ସା ଆବଶ୍ୟକ ? ସତକୁସତ ସେ ଡାକ୍ତର ପରାମର୍ଶ କରିବା ଆରମ୍ଭ କରିଦେଲା । ସେଦିନ ଏକ ଲମ୍ବା ପ୍ରେସ୍‌କ୍ରିପସନ୍ ହାତରେ ଧରି ସନ୍ଧ୍ୟାପରେ ସେ ଫେରିଲା । ଫେରିବାର ବିଳମ୍ବତା ଯୋଗୁଁ ଲାବଣ୍ୟ ବ୍ୟସ୍ତ ହୋଇଉଠିଥିଲା । ସେ ପଦାର୍ପଣ କ୍ଷଣି କହିଲା—ଅଫିସ୍ ପରେ ଏତେ ଡେରି କଲ ? ଦୁଇଘଣ୍ଟା ସମୟ ଯେ ମୁଁ କି ଅଶାନ୍ତିରେ କଟେଇଛି...

ଶ୍ରୀକାନ୍ତ ପ୍ରେସ୍‌କ୍ରିପସନ୍‌ଟା ତା ହାତକୁ ବଢ଼େଇଦେଇ କହିଲା—ଏଇଥି ପାଇଁ ଟିକିଏ ଡେରି ହୋଇଗଲା । ବାହାରି ପଡ଼ିଲ, ଯାଇ ଔଷଧଗୁଡ଼ା କିଣିଆଣିବା ।

ଶ୍ରୀକାନ୍ତର ଏ କାରବାର ଦେଖି ଲାବଣ୍ୟ ତଟସ୍ଥ । ତା'ର ତ କିଛି ରୋଗ ହୋଇନି—ସେ ତ ବେଶ୍ ସୁସ୍ଥ ଅଛି—ସେ ଔଷଧ ଖାଇବ କାହିଁକି ?

ଶ୍ରୀକାନ୍ତର ଏଇ ନିର୍ବୋଧତାରେ ସତକୁସତ ଲାବଣ୍ୟ ହସିଉଠିଲା ।

—କ'ଣ ଏସବୁ ପାଗଳଙ୍କ ପରି କାମ କରୁଚ ? ମୋର କ'ଣ ହୋଇଚ ଯେ ଶହେ ଟଙ୍କାର ଔଷଧ କିଣାହେବ ?

ଏଇ କଥା କେଇ ପଦରେ ଶ୍ରୀକାନ୍ତର ଭାରାକ୍ରାନ୍ତ ମନ ଟିକିଏ ହାଲୁକା ହେଲା । ସେ କହିଲା—ତମ ଦେହରେ ତ କିଛି ରୋଗ ନାହିଁ । ଦେହରେ ରୋଗ ଥିଲେ ତମେ ତ ଜାଣିପାରି ନିଜେ ମୋତେ କହିଆନ୍ତ ଔଷଧ ପାଇଁ ; ରୋଗଟା ମନର । ତେଣୁ ତୁମେ ଜାଣିପାରୁନାହଁ । ମୁଁ ଜାଣିପାରୁଚି ।

ଲାବଣ୍ୟ ଆହୁରି ହସିଲା ।

—ଶୁଣ ! କ'ଣ ଭାବୁଚ ମୁଁ ପାଗଳ ହେବାକୁ ଯାଉଛି ? ନା ନା, ତମେ ମୋ ଉପରେ ଆସ୍ଥା ରଖ । ଗାଆଁର ଅବସ୍ଥା ନେଇ ମୁଁ ଖୁବ୍ ଚିନ୍ତା କରୁଥିଲି । ସେଇ ଚିନ୍ତାଟା ମୋ ମନକୁ ଗ୍ରାସକରି ବସିଛି । ତାକୁ ଦୂରେଇ ଦବାକୁ ଚାହିଁଲେ, ସେ ଯାଉନାହିଁ । ତାର ଉପଶମ ଔଷଧରେ ନୁହେଁ ।

ଆଉ ? କେଉଁଥିରେ ପ୍ରତିକାର ତାହା ପ୍ରକାଶ କଲେ ଶ୍ରୀକାନ୍ତ କ'ଣ ତାହା କରିବ ନାହିଁ ? ଲାବଣ୍ୟ ମୁହଁ ଖୋଲିଲେ ତାହା ନ କରିବା ପର୍ଯ୍ୟନ୍ତ ଶ୍ରୀକାନ୍ତର ତର ନଥାଏ ।

ଶ୍ରୀକାନ୍ତ କହିଲା—ତମ ମନ ଭିତରେ କ'ଣ ଅଛି ମୋତେ କହୁନାହଁ କାହିଁକି ? ଏକା ଏକା ମନଟାକୁ ବାତ୍ୟାଗ୍ରସ୍ତ କଲେ ସବୁଯାକ କଷ୍ଟ ପିନା ତୁମେ ହିଁ

ପାଇବ—ମୋ ପାଇଁ ଆଉ ରହିବ କଣ ? ମୁଁ ପରା ବିଭାଘର ବେଳେ ଅଗ୍ନି ଦେବତାଙ୍କୁ ସାକ୍ଷୀ ରଖି କହିଚି ତୁମର ସୁଖ-ଦୁଃଖ ଭଲ-ମନ୍ଦରେ ଚିରଦିନ ମୁଁ ଭାଗୀ ହେବି !

ଲାବଣ୍ୟ କହିଲା—ତମକୁ ନ କହିବା ଏମିତି କଣ ଅଛି ? ତେବେ ଏବେ ନୁହେଁ—ଯଥାସମୟରେ ମୁଁ ତମକୁ କହିବି । ଏ ପ୍ରେସ୍‌କ୍ରିପସନ୍‌ର ଆବଶ୍ୟକତା ନାହିଁ ।

ଏତିକି କହି ସେ ପ୍ରେସ୍‌କ୍ରିପସନଟାକୁ ଚିରି ଫିଙ୍ଗିଦେଲା । ତା ପରେ କହିଲା—ଚାଲ, ହାଓ୍ୱାରେ ଟିକିଏ ବୁଲି ଆସିବା ।

ସେମାନେ ବସାରୁ ବାହାରି ଚାଲି ଚାଲି ଇଂଲଣ୍ଡ-ଏମ୍‌ପି ପର୍ଯ୍ୟନ୍ତ ଆସିଲେ । ଚାଲିବା ଭିତରେ ଲାବଣ୍ୟ ପଚାରିଲା—ବାହାଘର ବେଳେ ଓ ତା' ପୂର୍ବରୁ ଯୋଉ ବାପାଙ୍କୁ ତୁମେ ଦେଖିଥିଲ, ଏଥର ଗାଁକୁ ଯାଇ ସେଇ ବାପାଙ୍କୁ କଣ ତୁମେ ଦେଖିଲ ?

ଶ୍ରୀକାନ୍ତ କହିଲା—ମୁଁ ତୁମକୁ ଏକଥା ପଚାରି ପାରୁ ନଥିଲି । ସତରେ ବାପାଙ୍କର ଏ ମାନସିକ ଅବସ୍ଥା କାହିଁକି ? ଏତେ ଅଶାନ୍ତି ଭିତରେ ସେ ବା କେତକୀର ବିବାହ ଶେଷ କରିଦେବାକୁ ଚାହିଁଲେ କାହିଁକି ?

ଲାବଣ୍ୟ କହିଲା—ସେଇ କଥା ଭାବି ଭାବି ମନରେ ଶାନ୍ତି ନାହିଁ । କେମିତିକା ଅସହାୟ ଲାଗୁଛି । କଣ ହେଲା ଯେ ତାଙ୍କର··ତା'ପରେ ଜେଜେମା, ସେ ବର୍ତ୍ତମାନ ଏକ ବିରାଟ ସମସ୍ୟା—ଅଶାନ୍ତିର ମଞ୍ଜି । ଗୋଟାଏ ବୟସ—ସୀମା ପାରି ହୋଇଗଲେ ମଣିଷର ବୁଦ୍ଧି-ବୃତ୍ତି ଲୋପପାଇଯାଏ । ଯୋଉ ଜେଜେମା ମୋତେ ଏତେ ଭଲ ପାଉଥିଲେ, ସେଇ ଜେଜେମା'ଙ୍କର ବ୍ୟବହାରରେ ମୋତେ ଗୁରୁବାର ଦିନ ବାପଘରୁ ଆସିବାକୁ ପଡ଼ିଲା । ଅବଶ୍ୟ ମୋର ଏତେଟା ଭାବପ୍ରବଣ ହୋଇ ସେଦିନ ଆସିବା ଉଚିତ ନଥିଲା । ଆମ ଆସିବା ପରେ ବାପା ଆହୁରି ଭାଙ୍ଗି ପଡ଼ିଥିବେ । ମା' ତ କାନ୍ଦି କାନ୍ଦି କଣ୍ଟା ହୋଇଯିବଣି । ପୁଣି କେତକୀ ପାଖରୁ ଯୋଉ ସମ୍ବାଦ ଆସିଥିବ ତାହା ସୁସମ୍ବାଦ କି ଦୁଃସମ୍ବାଦ—ତାହାରି ଉପରେ ବାପା ମା'ଙ୍କ ଅବସ୍ଥାର ଉନ୍ନତି ବା ଅବନତି ନିର୍ଭର କରିଥିବ । ଚିଠି ଲେଖିବି ଲେଖିବି ବୋଲି ମୁଁ ବି ଏଯାଏ ଚିଠି ଦେଇପାରୁନି । କଲମ କାଗଜ ଧରି ବସିବା ବେଳକୁ ହାତ ଚଳୁନି ।

—କେତକୀର ବିଭାଘରରେ କିଛି ସମସ୍ୟା ଉପୁଜିଥିଲା ନା ? ଶ୍ରୀକାନ୍ତ ପଚାରିଲା ।

—ହଁ । 'କାର୍' ଦାବି କରି ସେମାନେ ଅଡ଼ିବସିଥିଲେ । ବାପା ଯେ ମୋ ବାହାଘରରେ କାହିଁକି କାର୍‌ଟାଏ ଦେଲେ ସେଇ ଘଟଣା ହିଁ ଏବେ କାଳ ହେଲା; କିନ୍ତୁ ଆଜିର ଅବସ୍ଥାରେ 'କାର୍'ଟାଏ ଦେବାର କ୍ଷମତା ବାପାଙ୍କର କାହିଁ ?

—ମୁଁ ବି ସେଇ କଥା ଭାବେ—ଶ୍ରୀକାନ୍ତ କହିଲା, "କାହିଁକି ଆମେ 'କାର୍'ଟାଏ ନେଇ ବାପାଙ୍କ ପାଖରେ ଚିରଦିନ ଋଣୀ ହୋଇ ରହିବା ? ଆମର କ'ଣ ବା ଅଭାବ ଅଛି ? ସେ କାର୍ ଯାଇ ତା'ପରେ ଗୋଟେ ପରେ ଗୋଟେ ତିନିଚାରିଟା କାର୍ ଆମେ କିଣିଲେଣି, ପୁଣି ବିକିଲେଣି । ବରଂ···"

କଥା ଏତିକିରେ ରହିଲା । ଲାବଣ୍ୟ ଫାଟକ ଖୋଲି ବସା ଘରା ଭିତରକୁ ପଶିଲା । ଶ୍ରୀକାନ୍ତ ଫାଟକ ବନ୍ଦ କରି ଆସିଲା । ପୁଣି ସେଇ ଲନ୍, ଫୁଲବଗିଚ୍ଚ, ଯମୁନାର ଶୀତଳ ପବନ···କିନ୍ତୁ ନୀରବତା ।

ଲାବଣ୍ୟ ଭାବୁଥିଲା—ଏଇ ସମୟରେ ବାପାଙ୍କୁ ଯଦି 'କାର୍'ଟା ଫେରେଇ ଦେଇ ହୁଅନ୍ତା ! ପୁଣି ପର ମୁହୂର୍ତ୍ତରେ ଭାବୁଥିଲା—ଫେରେଇଦେଲେ ସେ କ'ଣ ନେବେ ?

'କାର୍'ଟା ଫେରେଇ ଦେବାର ଇଚ୍ଛା'ଟା ସ୍ପଷ୍ଟଭାବରେ ଯଦିଓ ଶ୍ରୀକାନ୍ତ ପ୍ରକାଶ ନକରି ଇଚ୍ଛାର ସୂଚନା ମାତ୍ର ଦେଲା; କିନ୍ତୁ ସେ ଅନ୍ତର ଭିତରେ ଅନୁରୂପ ଚିନ୍ତା ହିଁ କରୁଥିଲା । ଶ୍ୱଶୁରଙ୍କର ଏ ଦୁର୍ଦ୍ଦିନରେ ସେ ଯଦି ତାଙ୍କୁ ସାହାଯ୍ୟ କରିପାରନ୍ତା !

ଆକାଶରେ ଜହ୍ନ ଉଠିଥିଲା । ଭାବନା ଭିତରେ ହିଁ ଶ୍ରୀକାନ୍ତର ଆଖି ବନ୍ଦ ହୋଇଆସିଲା । ଅନେକ ଦିନର ଅଶାନ୍ତ ସମୟ ପରେ ନିଦର ଆବେଶଟା ଆଜି ଥିଲା ପରମ ତୃପ୍ତିର ।

ଶ୍ରୀକାନ୍ତର ନିଦରେ କୌଣସି ବ୍ୟାଘାତ ସୃଷ୍ଟି ନକରି ଖାଇବା ପ୍ରସ୍ତୁତ ହେଲାଣିକି ନାହିଁ ବୁଝିବାପାଇଁ ରନ୍ଧାଘର ଆଡ଼କୁ ଗଲା ଲାବଣ୍ୟ । ପୂଝାରୀ ଜଣେଇଲା ଆହୁରି ଅଧଘଣ୍ଟାଏ ଡେରିହେବ । ସେ ଅଉ ଲନ୍‌କୁ ଫେରିନଯାଇ ବାପାଙ୍କ ପାଖକୁ ଚିଠି ଲେଖି ବସିଲା । ଚିଠିରେ କେତୋଟି ଭଲମନ୍ଦ ଜାଣିବା ବ୍ୟତୀତ ଅନ୍ୟ କଥା କିଛି ନଥିଲା । ଶେଷରେ ନିଜକୃତ ଅପରାଧ ପାଇଁ କ୍ଷମାପ୍ରାର୍ଥନା । ଚିଠିଟାକୁ ଟେବୁଲ ଉପରେ ରଖି ସେ ପୁଣି ଲନ୍‌କୁ ଫେରିଗଲା । ସେତେବେଳକୁ ଶ୍ରୀକାନ୍ତ ନିଘୋଡ଼ ନିଦରେ ଶୋଇପଡ଼ିଥାଏ । □□□

# ଆଠ

କନକ ଚିଠି ଦେଇଛୁ ।

ଶ୍ରୀ ଶ୍ୟାମଘନ ମହାପ୍ରଭୁଙ୍କ ଚରଣେ ଶରଣ ।

ପୂଜନୀୟା ନାନୀ ଜାଣିବ,

ଯେଉଁଦିନ ତୁମ୍ଭମାନଙ୍କୁ ଛାଡ଼ିଆସି ଶ୍ୱଶୁରଘରେ ରାତି ନଅଟାରେ ପହଞ୍ଚିଲି । ବାଟସାରା କାନ୍ଦି କାନ୍ଦି ଆସିବାରୁ ମୋ ଆଖି ଫୁଲିଯାଇଥିଲା । ସେଠାରେ ସମସ୍ତେ ମୋତେ ଅପେକ୍ଷା କରି ବସିଥିଲେ । ମୁଁ ସବାରୁ ଓହ୍ଲାଇବା ମାତ୍ରେ ଶାଶୂ ମୋତେ ଧରି ବହୁତ କାନ୍ଦିଲେ । ଶ୍ୱଶୁରଙ୍କ କାମ ସୁବୃଦ୍ଧି ଭଲରେ ହୋଇଗଲା । ବନ୍ଧୁ ବାନ୍ଧବ ଯେଉଁମାନେ ଆସିଥିଲେ ସେମାନେ ଚାଲିଗଲେ । ପୁଣି କାଲି ମୋ ଜେଜେବାପାଙ୍କ ମଲାଖବର ଆସିଛି । ବାପା ଲୋକ ପଠେଇଛନ୍ତି ଯିବାପାଇଁ । ଶାଶୂ କହୁଚନ୍ତି ଦଶଦିନ କି ସ୍ୱା ଆଗରୁ ପଠେଇବେ । ଏଥର ଯାଇ ତମକୁ ଆଉ କ'ଣ ମୁଁ ଦେଖିବି ? ସତରେ ନାନୀ, ଅଳ୍ପ ଦିନ ଭିତରେ ତମେ ମୋ ସହିତ କେତେ ମମତା ଲଗେଇଦେଲ ? ତମର ଚାନ୍ଦମୁହଁ ଦେଖିବା ଆଉ କଣ ମୋ ଭାଗ୍ୟରେ ଅଛି ?

ମୋ ଶାଶୂ ଭାରି ମନ୍ଦନମୁହାଁ । ଶ୍ୱଶୁର ମରିଯାଇଛନ୍ତି ବୋଲି ଦୁଃଖରେ ଅଛନ୍ତି, ନୋହିଲେ ଏତେବେଳକୁ କୁଆଡ଼େ କେତେ ଧାନ୍ଦା ଲଗେଇ ସାରନ୍ତେଣି । ସାଇ-ପଡ଼ଶାର ଝିଅ ବୋହୂମାନେ ମୋତେ କହୁଛନ୍ତି—ଶାଶୂ କୁଆଡ଼େ ଭାରି ଦୁଷ୍ଟ । ଥରେ ଦିଥର ଶ୍ୱଶୁରଙ୍କୁ ବି ଗ୍ରୁମ୍ପ ଣୀରେ ପିଟିଚନ୍ତି । ଯେ ନିଜ ସ୍ୱାମୀକୁ ଗ୍ରୁମ୍ପ ଣୀରେ ପିଟିଚି, ସେ ଯେ ମୋତେ ନ ପିଟିବ, କିଏ କହିବ ?

ନାନୀ, ଶଶୁରଘର ଝିଅମାନଙ୍କର ସବୁ କଛି; ମାତ୍ର ଫଟାକପାଳୀର ଶ୍ୱଶୁର ଘରେ କି ସୁଖ ଅଛି ? ମୋ ପାଖକୁ ମଝିରେ ମଝିରେ ଖଣ୍ଡେ ଖଣ୍ଡେ ଚିଠି ଦେଉଥିବ । ମୁଁ ଗାଁକୁ ଗଲେ ପୁଣି ତୁମକୁ ଚିଠି ଲେଖିବି । ଭିଣୋଇବାବୁଙ୍କୁ ମୋର ନମସ୍କାର ଜଣାଇ ଦେବ ।

। ଇତି ।<br>
ତୁମର ସ୍ନେହର<br>
କନକ

ସତସତର ଶ୍ୱଶୁରଘରକୁ ଯାଇ ଝିଅମାନେ ଯୋଉ ଅଭିଜ୍ଞତା ଅର୍ଜନ କରନ୍ତି, କନକର ଚିଠିରେ ତାହା ହିଁ ସ୍ପଷ୍ଟ ହୋଇଉଠିଛି । ଚିଠିରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ

ଖବର କନକର ଜେଜେବାପାଙ୍କର ମୃତ୍ୟୁ । ମଣିଷର ଚରିତ୍ର ଯେତେ ଖରାପ ହୋଇଥାଉ ପଛେ, ମୃତ୍ୟୁର ଖବରଟା ନିଶ୍ଚୟ ଦୁଃଖଦାୟକ । କିଛିକ୍ଷଣ ପାଇଁ ଲାବଣ୍ୟ ମନରେ ଦୁଃଖର ସରୁ ରେଖାଟିଏ ଝଲକି ଉଠି ମୁହୂର୍ତ୍ତକରେ ହଜିଗଲା ।

ଶ୍ରୀକାନ୍ତ ଅଫିସରୁ ଫେରିବାମାତ୍ରେ ଲାବଣ୍ୟ ତାକୁ ପଚାରିଲା—ତୁମେ କନକକୁ ଦେଖିଛ ?

ଶ୍ରୀକାନ୍ତ ମନେପକାଇବାକୁ ଚେଷ୍ଟା କରି କହିଲା—କୋଉ କନକ ?

ଲାବଣ୍ୟ କହିଲା—ଆମ ଗାଁର କନକ—ମୋ ଭଉଣୀ କନକ ।

ମନେପଡ଼ିଲା—ହଁ ହଁ, ଯୋଉ ଝିଅଟି ହାତରେ ତୁମେ ଥରେ ଦ'ଥର ମୋ ପାଖକୁ ଚିଠି ପଠାଇଥିଲ !

—ହଁ । ଲାବଣ୍ୟ କହିଲା ।

—ତାର କଣ ହେଲା କି ? ଶ୍ରୀକାନ୍ତ ପଚାରିଲା ।

"କିଛି ହୋଇନାହିଁ ଯେ, ସେ ଚିଠି ଦେଇଛି ।"

ଏହା କହି କନକ ଦେଇଥିବା ଚିଠିଟାକୁ ସେ ଶ୍ରୀକାନ୍ତକୁ ବଢ଼ାଇଦେଲା । "ପଢ଼ । ତୁମକୁ ନମସ୍କାର ଜଣାଇଛି । ଝିଅଟା ଭାରି ଦୁଃଖିନୀ ।" ଶ୍ରୀକାନ୍ତ ଜାଣିଥିଲା—କନକ ବାଲ୍ୟବିଧବା । ତାକୁ ଦେଖିବା ପରେ ତା ମନରେ ମଧ୍ୟ ପ୍ରଶ୍ନ ଉଠିଥିଲା—ଏଇଭଳି ଝିଅମାନେ ପୁଣି ଥରେ ବିଭା ନ ହେବେ କାହିଁକି ? ଜ୍ଞାନ ପାଇବା ପୂର୍ବରୁ ଯେ ବିବାହ କରି ସ୍ୱାମୀକୁ ହରେଇଛି, ସେ ତ ଅନୂଢ଼ା କନ୍ୟା ତୁଲ୍ୟ । ବିଲାତର ସାମାଜିକ ନିୟମ କଥା ମନେ ପକାଇ ସେ କହିଲା—ବିଲାତରେ ସ୍ୱାମୀ ଥିବା ନାରୀ ସ୍ୱାମୀକୁ ଛାଡ଼ପତ୍ର ଦେଇ ବିବାହ କରି ପାରୁଥିବାବେଳେ, ଆମ ଏ ଦେଶରେ ଏ ପ୍ରକାର ରକ୍ଷଣଶୀଳତା କେତେ ଝିଅଙ୍କ ଯେ ନଷ୍ଟଭ୍ରଷ୍ଟ କରିବାର ବାଟ ଉନ୍ମୁକ୍ତ କରୁଛି ତାହାର ହିସାବ କିଏ ଅବା ରଖୁଛି ?

ଲାବଣ୍ୟ କହିଲା—ଯଦି ଏଭଳି ଝିଅମାନଙ୍କର ଦ୍ୱିତୀୟବାର ବିବାହ କରିବାର ଅଧିକାର ନାହିଁ, ତେବେ ଆମ ଦେଶରେ ଚଳୁଥିବା ସତୀଦାହ ପ୍ରଥା ହିଁ ବେଶ୍ ଥିଲା । ସ୍ୱାମୀର ଚିତାରେ ସହମରଣ—ବାସ୍, ସମସ୍ୟାର ଶେଷ । ଇଂରେଜମାନେ ଏ ପ୍ରଥାକୁ ଉଠେଇଦେଇ କି ଉପକାର କଲେ ? କେବଳ କେତେଗୁଡ଼ିଏ ବିଧବାଙ୍କୁ ଜୀଆଇ ରଖି ନୂଆ ନୂଆ ସମସ୍ୟା ସୃଷ୍ଟି କରିଗଲେ । ସ୍ତ୍ରୀମାନଙ୍କର ଏ ଦୁଃଖ ସମୟର ଅବସାନ କେବେ ହେବ କେଜାଣି !

ଶ୍ରୀକାନ୍ତ କହିଲା—ଆମେ କ'ଣ ସବୁଦିନ ଏଇ ଅବସ୍ଥାରେ ଥିବା ? ଇଂରେଜମାନେ ତ ଆଉ ନାହାନ୍ତି । ତେବେ ଆମେ ସ୍ୱାଧୀନ । କ୍ରମେ ଆମ ଗାଁଗହଳର ଲୋକେ ସଭ୍ୟ ହେବେ ।

କେବେ ?—ଲବଣ୍ୟ ପଗ୍ଚରିଲ ।

ଶ୍ରୀକାନ୍ତ କହିଲ—ସେଇଟା ଭବିବାର କଥା । ମୁଁ ଭାବୁଚି ଯୋଉଦିନ ଦେଶରୁ ରକ୍ଷଣଶୀଳ ବୁଢ଼ାମାନଙ୍କର ଅବସାନ ଘଟିବ, ସମାଜର ଦାୟିତ୍ୱ ପରବର୍ତ୍ତୀ ପୁରୁଷ ହାତରେ ନ୍ୟସ୍ତ ହେବ, ସେଦିନ ଏ ସମସ୍ୟାର ଅବସାନ ଘଟିବ ।

ସମୟ ଆଗେଇ ଚ୍ଛଲିଚି । ସଭ୍ୟତା ପକ୍ଷ ବିସ୍ତାର କରି ମାଟି ମା' ପୃଥିବୀ-ବକ୍ଷର ଏ ପ୍ରାନ୍ତରୁ ସେ ପ୍ରାନ୍ତ ଯାଏ ତାର ଅବସ୍ଥିତି ବିଷୟରେ ସଚେତନ କରାଇବାକୁ ଆରମ୍ଭ କଲଣି । କ୍ରମଶଃ କମିଯାଉଚି ଦେଶ ଦେଶ ମଧ୍ୟରେ ଦୂରତ୍ୱ—ଜାତି ଜାତି ମଧ୍ୟରେ ଧିଭେଦ, ମଣିଷ ମଣିଷ ମଧ୍ୟରେ ତାରତମ୍ୟ ।

ବିଲାତ କଥା ଧରନିଆଯାଉ । ସ୍ୱାଧୀନତା ପୂର୍ବରୁ ବିଲାତି ଲୋକମାନଙ୍କର ଭାରତୀୟମାନଙ୍କ ପ୍ରତି ଯେଉଁ ମନୋଭାବ ଥିଲା, ଭାରତ ସ୍ୱାଧୀନ ହେବା ପରେ ସେ ମନୋଭାବର କଣ ପରିବର୍ତ୍ତନ ହେଉନାହିଁ ? 'କାଲ ଆଦ୍‌ମୀ' ଆଜ ବିଲାତକୁ ଯାଇ ତା ନିଜର ଅସ୍ତିତ୍ୱ ବଜାୟ ରଖି ପାରୁଚି । ଲଣ୍ଡନ ସହରରେ ବଢ଼ିଉଠୁଚି ଭାରତୀୟ ଦୋକାନ-ବ୍ୟବସାୟ କେନ୍ଦ୍ର । ଭାବ ଆଦାନ-ପ୍ରଦାନର ସୁଯୋଗ ସୃଷ୍ଟି ହେବାମାତେ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ସଂସ୍କୃତି ମଧ୍ୟରେ ଅପୂର୍ବ ସମନ୍ୱୟ ଘଟିବ । ପ୍ରାଚ୍ୟର ରକ୍ଷଣଶୀଳତା ଦୂର ହେବ । ପାଶ୍ଚାତ୍ୟର ଉଚ୍ଛୃଙ୍ଖଳତା ମଧ୍ୟ ଦମିତ ହେବ । ସେ ସମୟ ଆସନ୍ନପ୍ରାୟ ।

ବାପାଙ୍କଠୁ ଚିଠି ଆସିଚି । ବୁଢ଼ୀମା'ଙ୍କର ଦେହାବସାନ ହେଇଯାଇଚି । ବାପା ଲେଖିଛନ୍ତି—ବୁଝିଲୁ ମା' ଲବଣ୍ୟ, କ୍ରମେ କ୍ରମେ ଗାଁର ମୁରବୀମାନେ ଲୁଚିଯିବାକୁ ଯାଉଛନ୍ତି । ଦାମୋଦର ବାପା ଗଲେ, ତୋ ଜେଜେମା' ଗଲେ ।

ବୁଢ଼ୀଙ୍କର ସୁଖ-ମରଣ । ବୋହୂ, ଲୀଳାବତୀଙ୍କୁ ପାଖରେ ବସାଇ ଗପ କରୁକରୁ ଆଖିପତା ବନ୍ଦ କରିଦେଲେ । ଶେଷ ବେଳରେ ଭାରି ଅବଶୋଷ କରୁଥିଲେ ନାତି-ନାତୁଣୀମାନଙ୍କ ହାତରୁ ପାଣି ଟୋପେ ପାଇଲେନି ବୋଲି ।

ଚିଠିର ଜେଜେମା ଅଂଶଟି ଲବଣ୍ୟକୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ମନେହେଲନାହିଁ । ପାଚିଲା ଡାଳ ଯେ ଦିନେ ଗଛର ସମସ୍ତ ବନ୍ଧନକୁ କାଟି ମାଟି ଉପରେ ଖସିପଡ଼ିବ ଏହା ଜଣାଶୁଣା କଥା । ବୁଢ଼ୀ ଆଉ କେତେ କାଳ ବଞ୍ଚିଥାନ୍ତେ !

ଚିଠିର ଶେଷାଂଶରେ ନୀଳକଣ୍ଠ ଲେଖିଥିଲେ—ଲବଣ୍ୟ, ଗୋଟାଏ ବିଷୟରେ ତୋର ପରାମର୍ଶ ଦରକାର ପଡ଼ୁଛି ମା' ! ତୁ ତ ଜାଣୁ କେତକୀର ବିବାହ ସମୟରେ 'କାର'ଟାଏ ଦେବା କଥା ହୋଇଥିଲା । ମାସକ ଭିତରେ 'କାର' ଦେବି ବୋଲି ମୁଁ ସେତେବେଳେ କହିଥିଲି । ମାସକ ଜାଗାରେ କେତେମାସ ବିତିଗଲଣି । ଏ ଯାଏ ମୁଁ ମୋ ଜବାବ ରକ୍ଷା କରି ପାରିନାହିଁ । ତୋ ଜେଜେମା' ମରିବାର ଦାସିଦିନ କେତକୀକୁ ଆଣିବା ପାଇଁ ମୁଁ ସାଧୁକୁ ପଠେଇଥିଲି; ମାତ୍ର ସମୁଦୁଣୀ ସାଫ୍ ସାଫ୍

ମନା କରିଦେଲେ 'କାର୍' ନଦେବାଯାଏ ସେ କେତକୀକୁ ବାପଘରକୁ ପଠାଇବେ ନାହିଁ । କେତକୀ ସାଧୁ ହାତରେ ଚିଠି ଦେଇଛି । ଲେଖିଛି—ବାପା, ତୁମେ ମୋ ପାଇଁ ଆଦୌ ବ୍ୟସ୍ତ ହେବନାହିଁ । ମୋ ଭାଗ୍ୟ ମୁଁ ଭୋଗ କରିବି । ଏ ପରିସ୍ଥିତିରେ କ'ଣ କରାଯିବ ସ୍ଥିର କରିପାରୁନାହିଁ । ମୋର ପୈତୃକ ଜମିର ଅଂଶ ଯାହା, ହୁଏତ ସବୁଯାକ ବିକିଲେ କାର୍‌ଟାଏ ଦେଇହେବ; କିନ୍ତୁ ସେଇ ଜମି ଏବେ ମୋର ଚିନ୍ତାର ବିଷୟ ହୋଇଛି । ମୋର ତ ପୁଅ ନାହିଁ । ଭାବିଥିଲି ପୁରୁଣି ସାଧୁ ଓ ତାର ଭାଇମାନଙ୍କୁ ସେ ଜମି ଦେଇଦେବି । ଏଣେ ସେ ଜମିରେ ମୋ ଅନ୍ତେ ତୋର ଓ କେତକୀର ଅଧିକାର—ନ୍ୟାୟତଃ ତୁମେ ଦୁହେଁ ହିଁ ମୋର ଉତ୍ତରାଧିକାରିଣୀ । ଜମି ପୁରୁଣିମାନଙ୍କୁ ଦେବି ନା ତୁମପାଇଁ ରଖିଯିବି, ନା ବିକି କରି କେତକୀ ଶାଶୁର ଦାବି ପୂରଣ କରିବି—ଏଇ ହୋଇଛି ମୋ ପାଖରେ ସମସ୍ୟା । ଏ ସମ୍ପର୍କରେ ତୋର ପରାମର୍ଶ ଦରକାର । ଶ୍ରୀକାନ୍ତର ଅଜ୍ଞାତରେ ମଧ୍ୟ କିଛି ହେବା ଉଚିତ ନୁହେଁ । ତା ସହିତ ପରାମର୍ଶ କରିବୁ । ଜେଜେମା' କାମରେ କେତକୀ ଓ ଆନନ୍ଦ ତ ଆସିବେ ନାହିଁ, ତୁ ଓ ଶ୍ରୀକାନ୍ତ ଯଦି ଦୁଇଦିନ ପାଇଁ ଆସିପାରନ୍ତ—ଯଦି ଅସୁବିଧା ଥାଏ ନ ଆସିଲେ ମଧ୍ୟ ଚଳିବ । ଦେଖିବୁ ଯାହା ଭଲ ବିବେଚନା କରିବୁ ତାହାହିଁ କରିବୁ ।

ଚିଠି ପଢ଼ିସାରି ଲବଣ୍ୟ ଭାବୁଥିଲା—ବାପା ହେ, ତୁମେ କେଡ଼େ ମହତ୍ ! ତୁମେ କେଡ଼େ ଉଦାର ! ଝିଅ ଉପରେ କୌଣସି ଅଧିକାର ତୁମେ ସାବ୍ୟସ୍ତ କରିନାହଁ, ସମସ୍ତ ଭାର ମୋ ଉପରେ ଛାଡ଼ିଦେଇଛ । ସମ୍ପତ୍ତି ମୋର କ'ଣ ହେବ ? ସେଇ ସମ୍ପତ୍ତିର ପ୍ରତିଦାନରେ କେତକୀ ଯଦି ଆଜୀବନ ସୁଖୀ ହୁଏ ତାହାଠୁ ଅଧିକ କାମ୍ୟ ମୋର କ'ଣ ଅଛି ? କିନ୍ତୁ ସାଧୁ, ମଧୁ, ରଘୁ—ସେଇ ହତଭାଗା ପିତୃହୀନ ପିଲାଗୁଡ଼ାକ··· ସେମାନଙ୍କର ଭବିଷ୍ୟତ !

ଜୀବନସାରା ତୁମେ ତ୍ୟାଗ କରି କରି ଆସିଲ । ଜୀବନର ଶେଷ ପର୍ଯ୍ୟାୟରେ ତୁମେ ସ୍ୱାର୍ଥପର ହୋଇ ନିଜର ଝିଅମାନଙ୍କ ପାଇଁ ଭାଇର ପୁଅମାନଙ୍କୁ ପର କରିବ ! ଲୋକେ କ'ଣ କହିବେ ? ଆମ୍ଭମାନଙ୍କ ସୁଖ-ସ୍ୱାଚ୍ଛନ୍ଦ୍ୟଠାରୁ ତୁମର ସୁନାମ ହିଁ ଅଧିକ ମୂଲ୍ୟବାନ୍ । ଗୋପବନ୍ଧୁଙ୍କ ପରେ ତୁମେ ହିଁ ତ ସୃଷ୍ଟି କରିଛ ନିଃସ୍ୱାର୍ଥପରତାର ଇତିହାସ । ଭବିଷ୍ୟତ ପାଇଁ କିଛି ସଞ୍ଚୟ ନକରି ଉପାର୍ଜିତ ଅର୍ଥକୁ ଅନ୍ୟପାଇଁ ଉତ୍ସର୍ଗ କରିଦେଇଛ । ମୁଁ ତ ଦେଖିଛି ବାପା ! ତୁମର ସରଳ ଋଷିପରି ଜୀବନ ଯାପନ । ମାଆଙ୍କ ପାଇଁ ଭଲ ଶାଢ଼ୀ ଖଣ୍ଡେ ମଧ୍ୟ ତୁମେ କିଣିନାହଁ । ମନ୍ତ୍ରୀ ହିସାବରେ ଯେଉଁ କାର୍‌ଟାକୁ ତୁମେ ଉପଭୋଗ କରିଆସିଥିଲ, ତାକୁ ମଠେ ଦାନ କରିଦେଇଛ । ପୈତୃକ ଘର ସମ୍ପତ୍ତି ଛଡ଼ା ନିଜ ଆୟରେ ତୁମେ ଆଉ ଇଞ୍ଚେ ଜମି ମଧ୍ୟ ନିଜର କରିନାହଁ । କିନ୍ତୁ ମୁଁ ଜାଣିଛୁ, ଦେଶସେବା କରି, ନିଜ ଅଞ୍ଚଳର ଲୋକଙ୍କୁ ବିପୁଳ ଅର୍ଥ ଦାନଦେଇ ତୁମେ ଋଣଗ୍ରସ୍ତ ହୋଇଛ । କେତକୀର ବାହାଘର ଆଗରୁ ତୁମେ ମା'ଙ୍କୁ କହୁଥିଲ, ପାସ୍‌ବୁକ୍‌ରେ ଜମାଥିବା ଟଙ୍କାରୁ ସେ ସବୁ ଋଣ ପରିଶୋଧ କରିଦେବ; ମାତ୍ର ତାହା

କରି ପାରିଲ ନାହିଁ । ଓଲଟି ଅଧିକରୁ ଅଧିକ ଋଣଗ୍ରସ୍ତ ହୋଇ ତୁମେ ଅଶାନ୍ତିରେ କାଳ କାଟୁଛ ।

ବାପା ହେ ! ତୁମର ପୁଅ ଥିଲେ ଯଦି ସେ ଉପାର୍ଜ୍ଜନକ୍ଷମ ହୋଇଥାନ୍ତା, ତୁମ ଦୁଃଖ ଲାଘବ କରିଥାନ୍ତା । ସେ ଯଦି ତୁମ ଭଲ ଉଚ୍ଚ ଆସନର ଅଧିକାରୀ ହୋଇଥାନ୍ତା, ତୁମେ ଖୁସି ହୋଇଥାନ୍ତ । ଦୁଃଖ କରନା । ଏଥିପାଇଁ ଶେଷ ଜୀବନଟାକୁ ଦୁଶ୍ଚିନ୍ତା ଜାଲ୍ ଭିତରେ ବାନ୍ଧି-ଛାଦି ଅଣନିଃଶ୍ୱାସୀ ହୋଇପଡ଼ନା । ଏ ପୃଥିବୀରେ ପ୍ରଚୁର ମୁକ୍ତବାୟୁ ରହିଛି । ପୁଅ ନଥିଲେ ବି ମୁଁ ଅଛି । ଝିଅ ହୋଇ ମୁଁ ଯଦି ପୁଅର କାମ ତୁଲେଇ ଦେଇପାରେ, ତୁମେ ଆହୁରି ଖୁସି ହେବ । ମତେ ଆଶୀର୍ବାଦ କର ବାପା, ମୁଁ ତୁମ ଅପୂର୍ଣ୍ଣ ଇଚ୍ଛା ପୂରଣ କରିପାରେ । ତୁମ ଦୁଃଖଭାର ଲାଘବ କରି ତୁମ ଜୀବନରେ ଶାନ୍ତି ଫେରେଇ ଆଣିଦେଇପାରେ ।

ଲାବଣ୍ୟ ଗଭୀର ଚିନ୍ତାରେ ବୁଡ଼ିରହିଛି, ଶ୍ରୀକାନ୍ତ ଅଫିସରୁ ଫେରି ତା ମୁହଁ ଦେଖି ଡରିଗଲା । ଏ ପୁଣି କି ମୂର୍ତ୍ତି ? କି ଚେହେରା ? କି ଆଖି ? କି ମୁହଁ ?

ଲାବଣ୍ୟ କିନ୍ତୁ ସମ୍ପୂର୍ଣ୍ଣ ପ୍ରକୃତିସ୍ଥା । ଶ୍ରୀକାନ୍ତକୁ ପାଖରେ ବସାଇ ଗୋଟି ଗୋଟି କରି ସବୁ କହିଲା । ପ୍ରଥମରୁ ଶ୍ରୀକାନ୍ତ ମନରେ ଜାଗ୍ରତ ହୋଇଥିବା ଦୁର୍ଭାବନା କଟିଯିବା ପରେ ଗାଁକୁ ଯିବାର ଅନୁମତି ନେଇଗଲା—ପାର୍ଲିଆମେଣ୍ଟର ବଜେଟ୍ ସେସନ୍ ଚାଲିଛି, ତୁମେ ତ ଯାଇ ପାରିବ ନାହିଁ । ମୁଁ ଏକା ଏକା ଯାଉଛି । ସେଦିନ ରାଗ-ତମରେ ଚାଲି ଆସିବା ପରଠାରୁ ମନଟା ଭୀଷଣ ଚୋଲେଇ ଘାଣ୍ଟି ହେଉଛି । ଦି' ଦିନ ପାଇଁ ଯାଏ ।

ଶ୍ରୀକାନ୍ତ ପକ୍ଷରେ ଅସମ୍ମତ ହେବାର କାରଣ କିଛି ନଥିଲା । ଯଦି ଏଇ ଯିବାରେ ମନର ଶାନ୍ତି ଫେରିଆସେ !

ଯିବାର ସମସ୍ତ ଆୟୋଜନ ହୋଇଗଲା । ଆସିବାବେଳେ ଖଣ୍ଡେ ଚେକ୍‌ରେ ଶ୍ରୀକାନ୍ତର ଦସ୍ତଖତ କରାଇ ନେଇ ଲାବଣ୍ୟ ଗାଡ଼ିରେ ଉଠିଲା । କଲିକତା ଦେଇ ଓଡ଼ିଶା ଯାତ୍ରା । ବିଦାୟ ଦେବାବେଳେ ଶ୍ରୀକାନ୍ତ କହିଲା—ବାପାଙ୍କୁ ମାଙ୍କୁ ଯାଇ ରହଣିର ସମସ୍ୟାଟା ଅଯଥାରେ ଯେମିତି ବଢ଼େଇ ନ ଦିଅ । ତମେ ଆସିବା ପର୍ଯ୍ୟନ୍ତ ଏକାକିଆଟା ମତେ ଛଟପଟ ହବାକୁ ପଡ଼ିବ ।

ବିବାହ ପରଠାରୁ ଏ ଯାବତ୍ ଏଭଳି ପରିସ୍ଥିତି କେବେ ହୋଇନଥିଲା । ଦୁହେଁ ପରସ୍ପରଠାରୁ ଦିନକ ପାଇଁ ମଧ୍ୟ ଅଲଗା ରହିନଥିଲେ । ଆଉ ଶ୍ରୀକାନ୍ତ ଏକ ସ୍ୱାମୀ ଯେ କି ସ୍ତ୍ରୀ ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ । ଗାଡ଼ି ପ୍ଲାଟଫର୍ମ ଛାଡ଼ି ଅଦୃଶ୍ୟ ହୋଇଯିବା ସଙ୍ଗେ ସଙ୍ଗେ ଦୁଃଖର ଦୀର୍ଘ ନିଃଶ୍ୱାସ ଛାଡ଼ି ସେ ଫେରିପଡ଼ିଲା ।

ଏ କେତେ ଦିନ ତା'ର କଟିବ କେମିତି ?

ଗୋଟାଏ ଗୋଟାଏ ଦିନ ଗୋଟାଏ ଗୋଟାଏ ଯୁଗପରି ସିନା ଲାଗିବ !

□□□

# ନଅ

କନକର ଗୋଡ଼ ତଳେ ଲଗୁନାହିଁ । ଏତେ ଶୀଘ୍ର ଯେ ଲାବଣ୍ୟନାମ୍ନୀ ସନ୍ଧ୍ୟାର ଏମିତ ଭାବରେ ଦେଖାଦେଇଯିବ ସେ ସ୍ୱପ୍ନରେ ମୁଦ୍ଧା ଭାବି ନଥିଲା । ସେ ମନେ ମନେ ତା' ଜେଜେବାପା ଓ ଲାବଣ୍ୟର ଜେଜେମା'ଙ୍କର ଏକକାଳୀନ ମରଣପାଇଁ ଭଗବାନଙ୍କୁ କୃତଜ୍ଞତା ଜଣାଇଥିଲା । ଭାଗ୍ୟେ ଦୁଇଜଣଯାକ ଏକାସମୟରେ ମରିଥାରୁ ସିନା ଉଭୟଙ୍କର ଏଇ ଅଭାବିତ ସାକ୍ଷାତ୍ ହୋଇପାରିଲା, ନହେଲେ ତାହିଁ ବଞ୍ଚି ଆଉ କାହିଁ ଏଇ ପଲ୍ଲୀ ଗାଁ !

ଲାବଣ୍ୟ ଯେ ଆସିପାରିବ ଏକଥା ନୀଳକଣ୍ଠ ମଧ୍ୟ ଭାବି ନ ଥିଲେ । ଲାବଣ୍ୟର ଆବିର୍ଭାବ କାହିଁକି କେଜାଣି ତାଙ୍କର ମନରେ ଆଶାର ସଳିତା ଜାଳିଦେଉଥିଲା ।

କାହିଁକି ଏପରି ହୁଏ ? ତାଙ୍କର ଔରସରୁ ଜନ୍ମ ନେଇଥିବା ଝିଅଟି କୋଉ ଗୁଣରେ ତାଙ୍କର ସମକକ୍ଷ ? ବିଦ୍ୟାରେ, ବୁଦ୍ଧିରେ, ବୟସରେ ନା ଅଭିଜ୍ଞତାରେ— କୋଉଥିରେ ତ ନୁହେଁ । ଆଜି ତାର ଆସିବାଟା ନୀଳକଣ୍ଠଙ୍କ ମନରେ ବଳର ସଂଚାର କରିଛୁ ।

ଜେଜେମା' ମରିବାର ନବମ ଦିନରେ ବି ଲାବଣ୍ୟ ପଡ଼ିଛି । କେତକୀ ଆସିନାହିଁ । କନକ ଜେଜେବାପାଙ୍କର ଦଶାହ କର୍ମ ଶେଷ ହୋଇଯାଇଚି । ଘରେ ଆଉ କନକର କାମ କିଛି ନାହିଁ । ଜେଜେବାପାଙ୍କ ଜୀବିତାବସ୍ଥାରେ ଯୋଉ ଘର ତା' ପାଇଁ ଦୁର୍ବିସହ ହେଉଥିଲା, ତାଙ୍କର ଅନ୍ତର୍ଦ୍ଧାନରେ ସେ ଘର ଆଜି ତାକୁ ବେଶ୍ ଭଲଲାଗୁଛି । ବାପା ମା' ଝିଅପ୍ରତି ସମ୍ବେଦନଶୀଳ ।

ଠିକ୍ ଏଇ କଥା ଲାବଣ୍ୟ ମଧ୍ୟ ଉପଲବ୍ଧି କରୁଛି । ରୋଷାଇଘରକୁ ଯିବାରେ ତ ଆଉ କେହି ତାକୁ ବାଧା ଦେଉନାହାନ୍ତି । ବରଂ ମା' ସ୍ୱେଚ୍ଛାରେ ରୋଷାଇଘରର ସମସ୍ତ ଦାୟିତ୍ୱ ଲାବଣ୍ୟ ଉପରେ ନ୍ୟସ୍ତକରି ଆଶ୍ୱସ୍ତ ହୋଇଚନ୍ତି । ବାପା ବେଳେ ବେଳେ ରୋଷାଇଘରକୁ ଆସି ଲାବଣ୍ୟର ଉପସ୍ଥିତିକୁ ଦେଖିଯାଉଛନ୍ତି । କାହିଁକି ବାପା ଘନ ଘନ ଆସୁଛନ୍ତି ? ତାଙ୍କ ମନରେ ପୂର୍ବର ସେଇ ଆଶଙ୍କା କ'ଣ ରହିଚି ? ସେ କ'ଣ ଭାବୁଛନ୍ତି ଝିଅ ଆଉ କଏ ପୁଣି ସେଇ ପୁରୁଣା କଥାର ପୁନରାବୃତ୍ତି କରେ ! ହଁ, ଭାବିବାଟା ସ୍ୱାଭାବିକ । କାରଣ କାମ-କାର୍ଯ୍ୟର ଘରେ ବିଧବାଙ୍କର କ'ଣ ଅଭାବ ଅଛି ?

କିନ୍ତୁ ନୀଳକଣ୍ଠଙ୍କର ଚିନ୍ତା ଅମୂଳକ । ସେ ଯୁଗର ବିଧବା—ଆଉ ଏ ଯୁଗର ବିଧବାଙ୍କ ମଧ୍ୟରେ ବହୁତ ପାର୍ଥକ୍ୟ ରହିଯାଇଚି । ଆଜିର ବିଧବା ଆଉ ସେଇ କଡା-

ଶୃଙ୍ଖଳା ମାନିବାକୁ ଚାହେଁନା । ଆଜିର ବିଧବା ଧଳା ଆନ ପରିବର୍ତ୍ତେ ସରୁ ଧଡ଼ିଥିବା ଶାଢ଼ି ପିନ୍ଧିଲେଣି । ଦୁଇ ହାତକୁ କେବଳ ଅଳଙ୍କାର ବର୍ଜିତ କରି କାନରେ ବେକରେ ଅଳଙ୍କାର ପିନ୍ଧିଲେଣି । ଆଉ କନକ ପରି ବିଧବାମାନେ ମାଛ ଖାଇଲେଣି ।

ବୁଢ଼ୀଙ୍କ ଶୁଦ୍ଧି କାମ ଭିତରେ ସମସ୍ତଙ୍କ ଅଗୋଚରରେ ଲାବଣ୍ୟ ଏକ ବିଷମ କାଣ୍ଡ କରି ବସିଲା । କନକକୁ ସମସ୍ତଙ୍କ ଅଲକ୍ଷ୍ୟରେ ଖାଇବାକୁ ବସେଇଦେଇ ମାଛ ପରଷିଦେଇଗଲା । କନକ ତ ଖାଇବାପତ୍ର ଛାଡ଼ି ଉଠିଯାଉଥିଲା । ସେ ସିନା ଲୁଚେଇ ଲୁଚେଇ ନିଜର ଇଚ୍ଛା ପୂରଣ କରୁଥିଲା, ମାତ୍ର ପ୍ରକାଶ୍ୟରେ !

ଲାବଣ୍ୟ ତାକୁ ଧରି ପୁଣି ବସେଇ ଦେଇ କହିଲା—ଖା'ଲୋ, ଖାଇବାରେ କିଛି ଦୋଷ ନାହିଁ ।

କନକ ଶଙ୍କିତ ଭାବରେ କହିଲା—ନାନୀ, ତୁମେ ସିନା କହୁଚ, ହେଲେ କିଏ ଯଦି ଦେଖିବ !

ଲାବଣ୍ୟ କହିଲା—ମୁଁ ହେରି ଦେଉଚି, ତୁ ଚଞ୍ଚଳ ଖାଇପକା ।

ଇଚ୍ଛା ବା ଅନିଚ୍ଛା ଯାହା ହଉନା କାହିଁକି, କନକ ଆଉ ବିଶେଷ ପ୍ରତିବାଦ କଲାନାହିଁ । ତାର ଏଇ ଖାଇବାରେ ଲାବଣ୍ୟ ନିଜେ ପରିତୃପ୍ତ ହେଲା ।

ଲାବଣ୍ୟ ଫେରିଥିବା ସଙ୍ଗେ ସଙ୍ଗେ ହିଁ ଶ୍ରୀକାନ୍ତଠାରୁ ଚିଠି ଆସିଚି । ଗୋଟିଏ ଗୁରୁତର ଅଭାବ ସେ ସହିପାରିନି । ଚିଠିରେ ସେଇ କଥା ହିଁ ସେ ଲେଖିଚି ଏବଂ ଅଧିକ ଦିନ ନରହି ଶୀଘ୍ର ଫେରିଯିବାକୁ ଅନୁରୋଧ ଜଣାଇଚି ।

ମୃତାହ କାମ ଶେଷ ହେବା ପରେ ବାପା ନିଃଶ୍ୱାସ ମାରିବାକୁ ଟିକେ ପାଇଲେ । ସେଦିନ ସନ୍ଧ୍ୟାରେ ସେ ମନ୍ଦିରରୁ ଫେରିବା ପରେ ପରେ ଲାବଣ୍ୟ ତାଙ୍କ ପାଖରେ ଯାଇ ପହଞ୍ଚିଲା । ହାତରେ ଚାହା କପ । ଏଇ ସମୟରେ ବାପା କପେ ଚାହା ଖାଆନ୍ତି । ଚାହା କପଟା ନେଇ ନୀଳକଣ୍ଠ କହିଲେ—ବସ ମା ! ତୋର ଆଉ ଖବର କଣ ? ଦିଲ୍ଲୀରେ ଶ୍ରୀକାନ୍ତର ଆଉ କେତେ ଦିନ ରହିବ ?

ଲାବଣ୍ୟ କହିଲା—ଆଉରି ବୋଧେ ଦୁ'ବର୍ଷ । ତମେ ଆଉ ମା' ଥରେ ଚାଲ ବାପା ! ଆମେ ଥିବା ଭିତରେ ଥରେ ଦିଲ୍ଲୀ ଚାଲ ।

ନୀଳକଣ୍ଠ ଦୀର୍ଘ ନିଃଶ୍ୱାସ ପକାଇ ଅସ୍ପଷ୍ଟ ସ୍ୱରରେ କହିଲେ—ଆଉ ଦିଲ୍ଲୀ !

ଅର୍ଥାତ୍ ସେ ଭାବୁଥିଲେ—ତାଙ୍କ ଜୀବନରେ ଦିଲ୍ଲୀର ଆଉ ଆବଶ୍ୟକତା କ'ଣ ? ଦିଲ୍ଲୀର ଅଧ୍ୟାୟ ଶେଷ ହେଇଯାଇଚି । ଯୋଉ ଲୋକ ଆଉ ଭୁବନେଶ୍ୱର ଯିବାକୁ ମଧ୍ୟ ଇଚ୍ଛାକରୁନାହାନ୍ତି, କୋଉ ସୁଖ ପାଇଁ ସେ ପୁଣି ଦିଲ୍ଲୀ ଯିବେ ? ଅଉ

ଲୀଳାବତୀ ? ସେ ବି ତ ଦୁଇଥର ଦିଲ୍ଲୀ ଯାଇଛନ୍ତି । ଦିଲ୍ଲୀର ଯାହା କିଛି ଦର୍ଶନୀୟ ସବୁ ଦେଖିଛନ୍ତି । ଆଉ କଣ ବାକି ଅଛି ?

ଲାବଣ୍ୟ ପୁଣି କହିଲା—ହଁ ବାହାରକୁ ତ କୁଆଡ଼େ ଯାଉନାହଁ । ଘରକାମ ସିନା ଛାଡ଼ିଦେଲ, କିନ୍ତୁ ବାହାରକୁ ଯିବାର ଅଭ୍ୟାସଟାକୁ ଏକଦମ୍ ଛାଡ଼ିଦେଲେ ଚଳିବ କେମିତି ? ସଂସାରୀ ପଦମର୍ଯ୍ୟାଦା ନ ଥାଉ—ତମ ଝିଅ-ଜ୍ୱାଇଁ ତ ଏଠାରେ ଅଛନ୍ତି । ପୂର୍ବର ସେ ଅଭ୍ୟର୍ଥନା ନ ଥାଉ—ତୁମ ଝିଅ ଜ୍ୱାଇଁଙ୍କର ସ୍ନେହ ତ ସେଠି ଅଛି ।

ସେତେବେଳେ ଶେଷଥର ଲୀଳାବତୀ ଆଉ ଲାବଣ୍ୟ ଉଭୟ ନୀଳକଣ୍ଠଙ୍କ ସହିତ ଦିଲ୍ଲୀ ଯାଇଥିଲେ । ଲାବଣ୍ୟ ଦିଲ୍ଲୀ ଦେଖି ମୁଗଧ ହୋଇଯାଇଥିଲା । ଶିଶୁ-ସୁଲଭ ଚପଳତା ନେଇ କହିଥିଲା—ବାପା, ତମେ ଏଇଠି ଗୋଟାଏ ଘର କର । ଆମେ ସବୁଦିନ ଏଇଠି ରହିବା ।

ସବୁଦିନ ପାଇଁ ନ ହେଲେ ମଧ୍ୟ ଲାବଣ୍ୟର ସେ ସ୍ୱପ୍ନ ଆଂଶିକ ଭାବରେ ପୂର୍ଣ୍ଣ ହୋଇଚି । ଶ୍ୱଶୁର-ଶାଶୁ ରାଜି ହୋଇଚନ୍ତି ସେମାନେ ରହିଥିବା ଭିତରେ ଥରେ ଯିବେ ବୋଲି । ବାପା ମା' ଯଦି ଥରେ ଯାଆନ୍ତି ଲାବଣ୍ୟ ଆଉ ଶ୍ରୀକାନ୍ତର କର୍ତ୍ତବ୍ୟ ପୂର୍ଣ୍ଣ ହେବ ।

ହେଲେ ବର୍ତ୍ତମାନ ପାଇଁ ଥାଉ ସେ କଥା···ସେତେବେଳେ ଯାହା ।

ଲାବଣ୍ୟ କହିଲା—ବାପା, ତୁମେ ଚିଠିରେ ଗୋଟିଏ କଥା ଲେଖିଥିଲ...

ନୀଳକଣ୍ଠ ଉତ୍କଣ୍ଠିତ ହୋଇ ଲାବଣ୍ୟର ମୁହଁକୁ ଚାହିଁଲେ ।

ଲାବଣ୍ୟ କହିଚାଲିଥାଏ—ସେ ସମ୍ପର୍କରେ ତୁମର ଜ୍ୱାଇଁ ଓ ମୁଁ ଆଲୋଚନା କରି ··

ତା'ପରେ ? ଉତ୍କଣ୍ଠା ବଢ଼ି ଚାଲିଚି । ମନର ଦୁର୍ବଳତାରେ ସେ ଅସହାୟ··· ସ୍ଥିର କରିଚୁ···

ଲାବଣ୍ୟର ମଧ୍ୟ କହିବା କଥାଟାକୁ କହିଦବାରେ ବିଳମ୍ବ ହଉଚି ।

ନୀଳକଣ୍ଠ ପଚାରିଲେ—କ'ଣ ସ୍ଥିର କଲୁ ମା··· ?

ଲାବଣ୍ୟ କହିଲା—ତମେ ଆମକୁ ଦେଇଥିବା କାର୍‌ଟା ଆମେ ଫେରାଇ ଦେବୁ ।

ନୀଳକଣ୍ଠ ହଠାତ୍ ହସିଉଠିଲେ—ପାଗଳୀ, ସେ କାର୍ କ'ଣ ଆଉ ଅଛି ?

—କାର୍ ସିନା ନାହିଁ; କିନ୍ତୁ ତାର ମୂଲ୍ୟ···ଲାବଣ୍ୟ କହିଲା ।

—ଝିଅ-ଜ୍ୱାଇଁଙ୍କ ଆଦରରେ ଦେଇଥିବା ଜିନିଷ ମୁଁ ଫେରାଇ ନେବି ? ତୁ କ'ଣ କହୁଚୁ ମା ? ତୋ ଶ୍ୱଶୁର-ଶାଶୁ କେହି ତ ଏ 'କାର୍' ଦାବି କରିନଥିଲେ, ମୁଁ ସ୍ୱେଚ୍ଛାରେ ଦେଇଥିଲି ।

—ତୁମେ ମୋତେ ପର ବୋଲି କାହିଁକି ଭାବୁଚ ବାପା ? ମୁଁ ଯଦି ତୁମର ପୁଅ ହୋଇଥାନ୍ତି ? ତୁମ ଜ୍ୱାଇଁ ତ ତୁମକୁ କେବେ ଅନ୍ୟ ଆଖିରେ ଦେଖି ନାହାନ୍ତି । ଆମର କର୍ତ୍ତବ୍ୟ ଆମେ କରିବୁ । ତମେ ଯିନା ଫେରେଇ ନେବ ନାହିଁ, ଆମେ କିନ୍ତୁ କେତକୀକୁ 'କାର୍'ଟେ ଦେବୁ । ତମେ ମନା କରନି ବାପା !

ନୀଳକଣ୍ଠଙ୍କ ଆଖି ସଜଳ ହୋଇଉଠିଲା । ଲାବଣ୍ୟ ବେଶ୍ ଅନୁମାନ କରି ପାରିଲା ବାପାଙ୍କ ପ୍ରାଣର ସୂକ୍ଷ୍ମତନ୍ତ୍ରୀରେ ସେ ଆଘାତ କରିଚି । ସେ ଆଉ କିଛି ନକହି କିଛିକ୍ଷଣ ନୀରବ ରହିଲା ।

ନୀଳକଣ୍ଠ କହିଲେ—ମା, ଏ ଜୀବନରେ ଅନେକ ସ୍ୱପ୍ନ ମୋର ଥିଲା । ହେଲେ ମୁଁ କିଛି କରିପାରିଲିନି । ଗାଁକୁ ଫେରି ସେଇ ପୁରୁଣା ସଂସ୍କାର ଭିତରୁ ମୁ ମୁକ୍ତ ହୋଇପାରିଲିନି । ନିଜେ ସଂଶୋଧିତ ହୋଇ ମଧ୍ୟ ଅନ୍ୟକୁ ସଂଶୋଧନ କରି ପାରିଲିନି । ନିଜେ ତ ଦେଖିଲୁ. ଏଇ ଘରେ ନିଜର ମା, ବଡ଼ ବାପା କାହାରିକୁ ମୁଁ ବଦଳେଇ ପାରିଲିନି । ସାରା ସଂସାରକୁ ପରିବାର କରିବାର ସ୍ୱପ୍ନ ନେଇ ମୁଁ ଗାଁରୁ ବାହାରିଥିଲି । ହେଲେ ଫେରିଆସି ଗାଁଟାକୁ ମଧ୍ୟ ଏକ କରିପାରିଲି ନାହିଁ । ମୁଁ ଦୁର୍ବଳ ହୋଇପଡ଼ିଚି ମା ! ବେଳେବେଳେ ଭାବୁଚି ମୋର ବା ଶକ୍ତି କେତେ ? ମୁଁ ତ ଆଉ ରାମକୃଷ୍ଣ, ବିବେକାନନ୍ଦ ବା ଗାନ୍ଧି ନୁହେଁ । ମୁଁ ତ କହିପାରିବିନି 'ପରିତ୍ରାଣାୟ ସାଧୂନାମ୍ ବିନାଶାୟ ଚ ଦୁଷ୍କୃତାମ୍, ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।' ଏ ଯୁଗରେ କିଏ ଏମିତି ଅଛି, ଯେ ବିବେକାନନ୍ଦଙ୍କର ଉଦାତ୍ତ-ବାଣୀ ନେଇ ସମଗ୍ର ମାନବ ସମାଜ ପାଇଁ ମହାମିଳନର ବେଦି ରଚନା କରିପାରିବ ? ଗାନ୍ଧିଙ୍କ ପରି ଦରିଦ୍ର ନିପୀଡ଼ିତ ଜନତାର ଅଶ୍ରୁଳ ମୁହଁରୁ ଲୁହ ପୋଛି ପାରିବ ? ଅନେକ ଦୁଃଖ ମା—ମୋର ଆଶା ଭଙ୍ଗ ହୋଇଚି ।

ନୀଳକଣ୍ଠ ଚୁପ୍ ରହିଲେ । ଲାବଣ୍ୟ ଆଣିଥିବା ତିରିଶ ହଜାର ଟଙ୍କାର ଚେକଟାକୁ ତାଙ୍କୁ ବଢେଇ ଦେଇ କହିଲା—ଜୀବନରେ ଯଦି କେତକୀ ଜୀବନର ସୁଖ ଫେରିଆସେ, ସେଇ ଆମର ଭେଟି ।

ହଠାତ୍ ଏ କ'ଣ ହେଲା—ବାପା ପିଲାଙ୍କ ଭଳି କାନ୍ଦିଉଠିଲେ ।

ଲାବଣ୍ୟ କହିଲା—ବାପା, ତମେ ଏଭଳି କାନ୍ଦିଲେ ଆମେ ସବୁ କ'ଣ କରିବୁ ? ତମେ ପରା ଆମକୁ କୁହ ଧୈର୍ଯ୍ୟ ମଣିଷର ଅମୂଲ୍ୟ ରତ୍ନ । ତୁମେ ଭାଙ୍ଗି ପଡ଼ନି ବାପା !

ମୁଁ ଅଛୁ । ତମର ଆଦର୍ଶରେ ତମେ ତ ମୋତେ ଗଢ଼ିଚ । ମୋର ସବୁ ଶକ୍ତି ସବୁ ସାମର୍ଥ୍ୟ ଦେଇ ମୁଁ ତମକୁ ସୁଖୀ କରିବ ।

ନୀଳକଣ୍ଠଙ୍କୁ ଆଶ୍ଚର୍ଯ୍ୟ ଲଗୁଥିଲା । ନିଜ ଝିଅ ମୁହଁରେ ଏମିତି ମଧୁ-ପରଷା କଥା ସେ'ତ ଅଗରୁ କେବେ ଶୁଣିନଥିଲେ । ସେ ଆଜି ଧନ୍ୟ । ଛି ଛି, ସେ କାନ୍ଦୁଛନ୍ତି କାହିଁକି ? ସେ ନିଜକୁ ନିଜେ ଲଜ୍ଜିତ ହେଲେ ।

ଲାବଣ୍ୟ କହିଲା—ବାପା ! ତମକୁ ଆଉ ମା'କୁ ମୁଁ କିଛିଦିନ ପାଇଁ ସାଙ୍ଗରେ ନେଇଯିବି । ଜଳବାୟୁ ପରିବର୍ତ୍ତନ ଦରକାର ।

ନୀଳକଣ୍ଠ କହିଲେ—ଏଥର ଥାଉ ମା । ତମେ ରହିଥିବା ଭିତରେ ଆମେ ଥରେ ଦିଲ୍ଲୀ ଯିବୁ ।

ଲାବଣ୍ୟ ତାର କର୍ତ୍ତବ୍ୟ ଶେଷକରି ଆଶ୍ୱସ୍ତି ଅନୁଭବ କଲା । ବେଶିଦିନ ରହିବା ସମ୍ଭବ ନୁହେଁ, ତାକୁ ଏବେ ଫେରିଯିବାକୁ ପଡ଼ିବ ।

ପରଦିନ ଉପରଓଳି ସେ ଫେରିଲା । ଫେରିବା ପୂର୍ବ ମୁହୂର୍ତ୍ତରେ କନକ କହିଲା—ଅପା, ମୋତେ ଥରେ ଦିଲ୍ଲୀ ନେଇଯାଆନ୍ତୁନି ! ତମର ସୁଖ ଥରେ ଆଖିରେ ଦେଖି ଧନ୍ୟ ହୁଅନ୍ତି ।

ଲାବଣ୍ୟ କହିଲା—କନକ, ମୋର ସୁଖ ଦେଖି ତୋର ଈର୍ଷା ହେଉଛି, ନା !

ଏ କଥା ଶୁଣି କନକ ଯେମିତି ମାଟିରେ ମିଶିଗଲା । ଲାବଣ୍ୟର ଗୋଡ଼ ଦିଟାକୁ ଧରିନେଇ କହିଲା—ନାନି ! କ'ଣ କହିଲ ? ମୋ ମୁଣ୍ଡ ଖାଇବ ପଛେ ଆଉ ଏମିତି କଥା କହିବନି । ମୁଁ କୋଉଠି ତୁମେ କୋଉଠି ? ଏ ଗାଁ କୋଉଠି, ଦିଲ୍ଲୀ କୋଉଠି ? ମୁଁ ଏମିତି କହୁଥିଲି ନା !

କଥା ଶେଷକରି ଲାବଣ୍ୟ ଯାଇ ବଳଦଗାଡ଼ିରେ ବସିଲା—ଷ୍ଟେସନ ଯିବ । ସାଙ୍ଗରେ ସାଧୁ, ମଧୁ ଦି ଭାଇ—ଷ୍ଟେସନରେ ଗାଡ଼ି ଚଢ଼େଇ ଫେରିବେ । ବଳଦଗାଡ଼ି ଗଡ଼ିଲା ବେଳେ ବାପା ତଳକୁ ଆସି ଏକ ଲୟରେ ଚାହିଁରହିଥିଲେ । ଗାଡ଼ି ଧୀର ମନ୍ଥର ଗତିରେ ଆଗେଇ ଯାଉଥିଲା । ଲାବଣ୍ୟର ମୁହଁ ବୁଲେଇ ଦିବା ସଙ୍ଗେ ସଙ୍ଗେ କେତକୀର ମୁହଁ ନିକଟେଇ ଆସୁଥିଲା । କେତକୀ କାନ୍ଦୁଛି ଯେମିତି !

# ଦଶ

କେତକୀର ଆଖିରେ ଅନବରତ ଲୁହ । ଶାଶୁଘରେ ପ୍ରଥମ ସାତଦିନ ଲୋକ ଗହଳି ଭିତରେ କଟିଯାଇଥିଲା । ଚଉଠି-ରାତିଟା ଅନଭିଜ୍ଞ କିଶୋରୀ ଜୀବନର ସନ୍ଦର୍ଭ ଅଭୁଲା ହୋଇ ରହିଛି; କିନ୍ତୁ ତାର ମର୍ମଭେଦୀ ଦୁଃଖକୁ ଘୁଞ୍ଚାଇ ପାରିନାହିଁ ।

ସେଇ ଚଉଠି-ରାତି । ପ୍ରତ୍ୟେକ ବିବାହିତା ନାରୀ ଜୀବନରେ ଚଞ୍ଚଳତା ଆଣିଥାଏ । ଜୀବନରେ ଥରେ ଆସେ—ଭାରି କ୍ଷଣସ୍ଥାୟୀ । ସେ ରାତିରେ କ'ଣ ଘଟେ କେହି କେତକୀକୁ କହି ନଥିଲେ । ଗାଁରେ ତାର ସବୁଠୁ ଅନ୍ତରଙ୍ଗ ଥିଲି କନକ । କିନ୍ତୁ ସେ ବା ଏ ରାତି ସମ୍ପର୍କରେ କଣ ଜାଣେ ? ତେଣୁ କେତକୀକୁ ଏ ସମ୍ପର୍କରେ ଜ୍ଞାନ ଅର୍ଜନ କରିବାକୁ ପଡ଼ିଥିଲା ଉପନ୍ୟାସ ବହି ପଢ଼ି । କେମିତି ପ୍ରଥମ ଦେଖା ସାକ୍ଷାତ ହୁଏ—ପ୍ରଥମ ସମ୍ଭାଷଣ—ଭାବର ଆଦାନ ପ୍ରଦାନ—ପ୍ରେମ ନିବେଦନ, ରୁଷାରୁଷି, ମାନ ଅଭିମାନ – ସବୁ କିଛି । ଆଗାମୀ ଦାମ୍ପତ୍ୟ ଜୀବନରେ ଯାହା କିଛି ଘଟିବାର ସମ୍ଭାବନା, ସେ ସବୁକୁ ସେଇ ରାତିରେ ଘଟେଇବା ବିଧି । ସେହି ରାତିରେ ସ୍ୱାମୀ-ସ୍ତ୍ରୀ ନିବିଡ଼ ବନ୍ଧନରେ ବାନ୍ଧି ହୁଅନ୍ତି ଓ ଇହକାଳ ପରକାଳ ପାଇଁ ଅବିଚ୍ଛେଦ୍ୟ ସମ୍ପର୍କ ସ୍ଥାପନ କରନ୍ତି । ସେଇ ରାତିରେ କେତକୀ ସ୍ୱାମୀର ଉଷ୍ମ ପ୍ରୀତିର ସ୍ପର୍ଶ ପାଇଥିଲା ସତ; କିନ୍ତୁ ଆନ୍ତରିକତାର ଆନୁଷଙ୍ଗିକ ଉପାଦାନର ଅଭାବ ମର୍ମେ ମର୍ମେ ଅନୁଭବ କରିଥିଲା । ଆନନ୍ଦର କଥାରେ ଥିଲା ରୁକ୍ଷତା । ସ୍ତ୍ରୀ ନିକଟରେ ଯେପରି ବିନମ୍ର ହେବାର କଥା ତାହା ସେ ହୋଇପାରିନଥିଲା; ବରଂ ନିଜର ପ୍ରଭୁତ୍ୱ, ଆଧିପତ୍ୟ ଦେଖାଇବା ପାଇଁ ତତ୍ପର ହୋଇଉଠିଥିଲା । ତଥାପି ସେ ଦିନ ରାତିରେ କେତକୀ ରୋମାଞ୍ଚିତ ହୋଇଥିଲା । ପାହାନ୍ତା ପହରକୁ କ୍ଲାନ୍ତ ହୋଇ ଶୋଇପଡ଼ିଥିଲା ।

ଦଶଦିନ ରହି କେତକୀକୁ ବାପା-ମାଙ୍କ ଦାୟିତ୍ୱରେ ଛାଡ଼ି ଆନନ୍ଦ ନିଜର କର୍ମସ୍ଥଳୀ ସୁଦୂର କୋରାପୁଟକୁ ଚାଲିଯାଇଥିଲା । ଅବଶ୍ୟ ଦୁଇମାସ ପରେ ପୁଣି ସେ ଆସିଥିଲା ଦୁଇଦିନ ପାଇଁ । କେତକୀକୁ ନେଇଯିବାକୁ ଚାହିଁଥିଲା; ମାତ୍ର ମା' ସେଥିରେ ଅମତ ହେଲେ । ବିବାହ ପରେ ଅନ୍ତତଃ ଗୋଟାଏ ବର୍ଷ ଘରେ ନ ରହି ସେ ବର୍ତ୍ତମାନ କୁଆଡ଼େ ଯିବ ? ତା ବାପ କହିଛି ମଟର ଦବ । ମଟର ଆସୁ, ସେଇଥିରେ ସେ ଚଢ଼ିକରି ଯିବ ।

ଆନନ୍ଦ ଚାଲିଗଲେ, ଆଉ ଆସିନାହାନ୍ତି, ଆସିବାକୁ ବେଳ ପାଇନାହାନ୍ତି, କାରଣ ସେତେବେଳକୁ କୋରାପୁଟ ଜିଲ୍ଲାରେ ନକ୍ସଲପନ୍ଥୀ ଆନ୍ଦୋଳନ ଜୋର

ଯୋର୍ ଧରି ଚାଲିଥାଏ । ସରକାରଙ୍କ ନିର୍ଦ୍ଦେଶରେ ସେ ଆନ୍ଦୋଳନକୁ ଦମନ କରିବାର ଦାୟିତ୍ୱ ତାହାରି ଉପରେ ନ୍ୟସ୍ତ ଥାଏ । ଏ ଗୁରୁ ଦାୟିତ୍ୱ ଛାଡ଼ି ସେ ଆସନ୍ତା ବା କିପରି ?

ନିଜ ଭାଗ୍ୟକୁ ଆଦରି ଶାଶୁଘରେ ପଡ଼ି ରହିବା ଛଡ଼ା କେତକୀର ଅନ୍ୟ ବାଟ କିଛି ନ ଥିଲା । ଚିଠି ଦବାକୁ ଚାହିଁ ମଧ୍ୟ ସେ ଦେଇପାରିନାହିଁ; କାରଣ ଚିଠି ଦବାକୁ ହେଲେ ସେ ତ ନିଜେ ଯାଇ ଆଉ ପୋଷ୍ଟ ଅଫିସରେ ଚିଠିଟା ପକାଇବ ନାହିଁ, କାହାରି ହାତରେ ତାକୁ ପଠାଇବାକୁ ପଡ଼ିବ ! କାହାକୁ ବା ସେ ଏ କାର୍ଯ୍ୟରେ ନିଯୁକ୍ତ କରିବ ? କିଏ ଅଛି ?

ତା ଉପରେ ପୁଣି ଶାଶୁଙ୍କର କଡ଼ା କଟକଣା । ଶାଶୁଙ୍କର ପ୍ରତ୍ୟେକ କଥା ଶ୍ଳେଷ-ମିଶ୍ରିତ । ବାପାଙ୍କର ଯଦି କିଛି ଦୋଷ ଥାଏ, ସେଥିପାଇଁ କେତକୀ କାହିଁକି ଦାୟୀ ହେବ ? ଆଉ ବାପାଙ୍କର କ'ଣ ବା ଦୋଷ ? କାର୍ ଦବାକୁ କହି ଏ ଯାଏ ଦେଇ ନାହାନ୍ତି···କିନ୍ତୁ ଦେବେ ନାହିଁ ବୋଲି ମନା ତ କରିନାହାନ୍ତି ! କେତକୀ ତ ଜାଣେ ବାପା ଯୋଉଟା କହିଛନ୍ତି, ନିଶ୍ଚୟ ପୂରଣ କରିବେ । ସେଥିପାଇଁ ଶାଶୁଙ୍କର ଟିକିଏ ଧୈର୍ଯ୍ୟ ଦରକାର । କାର୍ ମିଳିନାହିଁ ବୋଲି କେତକୀ ତ ସ୍ୱାମୀ ସୁଖରୁ ବଞ୍ଚିତ ହେଇଚି । ହୃଦ୍ରୁ ଦସୂତ୍ର ଦଣ୍ଡିତ ହେଉଛି । ପାଖପଡ଼ିଶା ଆସିଲେ ଗଲେ ସେ ଆସୁଚି ଶାଶୁ ସମସ୍ତଙ୍କ ଆଗରେ ସେହି କଥା ହିଁ ଉଠାଉଛନ୍ତି : ମନ୍ତ୍ରୀ ଝିଅ—ଅପେକ୍ଷା କରିଚି ଲୋ, ବାପ କାର୍ ଦେଲେ ସେଥିରେ ଚଢ଼ି କୋରାପୁଟ ଯିବ । ବାପ ଏତେ ନିର୍ଲଜ୍ଜ ଯେ ଏଯାଏ ତାର ଦେଖାନାହିଁ କି କାର୍‌ର ଦେଖା ନାହିଁ । ପୁଅଟା ସେଠିଣେ ହୋଟେଲ ଭାତ ଖାଇ ଖାଇ ପେଟ ଖରାପ କଲାଣି । ମଝିରେ ମୁଁ ଯା' ହନ୍ତସନ୍ତ ହଉଚି । କ'ଣ କରିବ ? ମୋ ଭାଗ୍ୟ !

ଏଇକଥା ଶୁଣି କେତକୀର ମୁହଁ ଏତୁଟିଏ ହୋଇଯାଏ । ବକ୍ତୃତାକାରିଣୀ ଯଦି ଶାଶୁ ନହୋଇ ଆଉ କେହି ହୋଇଥାନ୍ତା ପିତୃନିନ୍ଦାର ଫଳ ସେ ହାତେ ହାତେ ଦେଖାଇ ଦିଅନ୍ତା; ମାତ୍ର ସେ ନାଚାର !

ଶ୍ୱଶୁର କିନ୍ତୁ ଏଭଳି ମିଜାଜର ଲୋକ ନୁହନ୍ତି । ଧୀରସ୍ଥିର ବେଶ୍ ଭଦ୍ରଲୋକ । ତାଙ୍କର ଚାଲିଚଳଣି ଦେଖିଲେ ମନେହୁଏ ସେ ମାଛି କି ମ ବୋଲି ମଧ୍ୟ କହନ୍ତିନି । ଗୋଟିଏ ପକ୍ଷ ଅତ୍ୟନ୍ତ ନରମ ହୋଇଥିବାରୁ ଆରପକ୍ଷ ବୋଧହୁଏ ଏତେ ଉଦ୍ଧତ ହେଇଚି । ଶାଶୁଙ୍କର ନିର୍ଯାତନା ଯେ କେବଳ କେତକୀକୁ ସହିବାକୁ ପଡ଼ୁଛି ତା' ନୁହେଁ, ବେଳେବେଳେ ଶ୍ୱଶୁରଙ୍କ ଦୁଃଖ ମଧ୍ୟ ତା'ଠୁ ବଳିଯାଏ । ବୋହୂ ଆଗରେ ଶ୍ୱଶୁରଙ୍କୁ ଶାଶୁ କହନ୍ତି—ତମକୁ ମରଣ ହଉନି କାହିଁକି କେଜାଣି, ତମେ ମଲେ ମୁଁ ଏଇକ୍ଷଣି ହାତରୁ ଶଙ୍ଖା ସିନ୍ଦୂର କାଢ଼ି ଗଙ୍ଗାସ୍ନାନକରି ଆସନ୍ତି । ସେଦିନ ତ

କେତକୀର ଉପସ୍ଥିତିରେ ଉଭୟଙ୍କର ହାତାହାତି ହୋଇଯାଇଥାନ୍ତା । କେତକୀ ଯାଇ ଉଭୟଙ୍କ ମଝିରେ ଠିଆହୋଇଗଲା । ଶାଶୂଙ୍କର ଉଦ୍ୟତ ହାତମୁଠା କେତକୀର ମୁଣ୍ଡ ଉପରେ ହିଁ ପଡ଼ିଥିଲା । ଏଇ ଘଟଣା ପରେ ଶ୍ୱଶୁର ହରମୋହନ ଦୁଇଦିନ କାଳ ଅଫିସରୁ ଫେରିନାହାନ୍ତି । ସେ ତ ସଦର ମହକୁମାରେ ନାଜର । ପିଅନରନ୍ଧା ଖାଇ ଦୁଇଦିନ ଅଫିସ୍‌ରେ ଟେବୁଲ ଉପରେ ଶୋଇ କଟାଇଦେଲେ । ଶାଶୂ-ଶ୍ୱଶୁରଙ୍କ କାରବାରରେ କେତକୀ ଚାକୁବ ହୁଏ, ଚାଟକା ହୁଏ । ଭାବେ ତା ବାପ ମା'ଙ୍କର ଏମାନେ ବିପରୀତ ।

ଶାଶୂ କହନ୍ତି—ଇଲେ ମନ୍ତ୍ରୀ ଘର ଝିଅ, ତୋ ପୋଡ଼ାମୁହଁ । ଶ୍ୱଶୁର କୁଆଡ଼େ ଗଲା ଡାକିଆଣ, ଗିଳିବ ।

କେତକୀ ଏ ପ୍ରକାର ଭାଷା ଜୀବନରେ କେବେ ଶୁଣିନଥିଲା । ତା ପାଇଁ ଏସବୁ ନୂଆ । ଶ୍ୱଶୁର ଟଙ୍କା ରୋଜଗାର କରନ୍ତି ! ଦରମା ତ ଯାହା ପାଆନ୍ତି ମାସ ଶେଷରେ ଆଣନ୍ତି, ତା'ଛଡ଼ା ଦୈନିକ କଚେରୀରୁ ଫେରିବାବେଳେ କିଛି ନା କିଛି ପଇସା ଆସିଥାଏ । ସେ ପଇସାର ପରିମାଣ ଯଦି ଦଶ ଟଙ୍କାରୁ କମ୍ ହୁଏ, ସେଦିନ ଘରେ ପ୍ରଳୟ କାଣ୍ଡ ଘଟେ ।

ଉମାଶଶୀ କେତକୀକୁ ଶୁଣେଇ କହନ୍ତି—ବୁଝିଲୁ ବୋହୂ, ତୋ ଶ୍ୱଶୁର ମାଇଚିଆ । ମୁହଁ ଖୋଲି ମାଗିବନି । ଏଟାକୁ କିଏ ପଇସା ଦେବ ? ନିଜେ ନ ମଲେ ଯମ-ଦର୍ଶନ ଅଛି ? ଅର୍ଦ୍ଦଳୀ ପାଇଛି ସିନା ବାରିକ । ସେ ନେଇ ସ୍ୱାକୁ ଦେବ ? କୋଡ଼ିଏ ନେଲେ ପାଞ୍ଚ ପକେଇବ । ତା ଘରେ ଦେଖିବୁ ଯା ଯେତେ ଆଳମାରିକା ଜିନିଷ ଅଛି, ତାର ଅଧେ ଆମଘରେ ନାହିଁ । ଆଉ ଜିନିଷ କଥା ତ ଛାଡ଼, ସେଇ ସିନା ବାରିକ ପୁଅ, ତୋ ବାହାଘରର ଛ'ମାସ ଆଗରୁ ବାହାହେଲା । କୋଉ ବା ସ୍ନାତକ—କିରାଣୀଟେ ତ ? ଶ୍ୱଶୁର ଘରୁ ଯାହା ପାଇଚି ଦେଖି ଆସିବୁ ଯା । ହେ'ଟା ଘର ଭର୍ତ୍ତି ଜିନିଷ । ଆଉ ବୋହୂଟା ଯେତିକି ଗହଣା ଆଣିଚି ତୋ ଗହଣା ବି ତା' ସରି ହବନି । ଏଟାର ମୁହଁ ଅଛି ନା କହିବ । ତୋ ବୋପାକୁ କହିଥିଲେ ସେ କ'ଣ ଆଉ ଦଶ କୋଡ଼ିଏ ଭରି ଗହଣା ଦେଇ ନଥାନ୍ତା ! ଏଁ କିଛି କହିବନି । ଯାହା କହିବି ମୁଁ । ମୁଁ ତ ମାଇପିଟାଏ, ମୋର ବା କେତେ ବୁଦ୍ଧି ! ଦୁଧଆଳୀ ଗାଈଟେ ଦବାକୁ ପରା କହିବାକୁ ଭୁଲିଗଲୁ । ଗାଈଟେ ଆସିଥିଲେ ତୋ ପାଟିରେ ତ ମୁନ୍ଦେ ମୁନ୍ଦେ ଦୁଧ ପଡ଼ୁଥାନ୍ତା । ମୋ ପୋଡ଼ା କପାଳକୁ ଇମିତି ଲୋକଟେ ଜୁଟିଚି ଯେ କହି କହି ମୁଁ ପାଗଳ ହେଇଯିବି । ତୁ ଲେଖ ବୋହୂ ଆନନ୍ଦକୁ, ସେ ଆସି ମତେ ଏଠୁ ନେଇ-ଯାଉ । ତୁମେ ଶ୍ୱଶୁର-ବୋହୂ ଏଇଠି ଥାଅ । ବାପାକୁ ଚିଠି ଲେଖିଦେ ପୁଷ୍ଟାଣ୍ଟେ ପଠେଇବ । ଗଣ୍ଡେ ଫୁଟେଇକି ମୁହଁରେ ଦବ । ତୁ ତ ବଡ଼ ଘରର ପାଠପଢ଼ୁଆ

ଝିଅ । ରୋଷେଇ ଘରକୁ ଗଲେ ତୋ ହାତରେ କଳା ଲାଗିବ—ଚୁଲି ପାଖରେ ବସିଲେ ତୋ ମୁଣ୍ଡ ବିନ୍ଧିବ । ମୁଁ ଆଉ କେତେ ଦିନ ଏଠି ପୋଇଲି ଖଟିବି !

ବିଚାରୀ କେତକୀ ! ପୂର୍ବ ଜନ୍ମର କେଉଁ ଅଭିଶାପ ଯୋଗୁଁ ସେ ଏଠି ଆସି ପଶିଲା ତାହା କେବଳ ସେଇ ଦିନ ରାତି କରୁଥିବା ବିଧାତା ପୁରୁଷଙ୍କୁ ଜଣା ।

କେତକୀ ଏକା ଏକା ଶୋଇ କାନ୍ଦେ । ବେଳେ ବେଳେ ତାକୁ ଡର ବି ଲାଗେ । ଏକାକିଆ ଶୋଇବାର ଅଭ୍ୟାସ ତ ତାର ନାହିଁ । ଯୋଉଦିନ ଶାଶୁଙ୍କ ମିଜାଜଟା ଭଲଥାଏ, ସେଦିନ ଅନେକ ରାତି ପର୍ଯ୍ୟନ୍ତ ପାଖ ଘର ଭିତରେ ଶ୍ୱଶୁରଙ୍କ ସହିତ ସେ ଭୁଟ୍‌ଭାଟ୍‌ରେ ହୁଅନ୍ତି । ତାଙ୍କ ଶୋଇବା ଘରଟା କେତକୀ ଶୋଇବା ଘରକୁ ଲାଗିଛି । ସହର ହେଲେ ବି ପୁରୁଣାକାଳିଆ ଘର, ହରମୋହନଙ୍କ ବାପ ଅମଳ । ସେ ନିଜେ ଆଉ କିଛି କରିନାହାନ୍ତି । କରିବେ ବା କେମିତି ? ଆନନ୍ଦର ପାଠପଢ଼ାରେ କଣ କମ୍ ପଇସା ଖର୍ଚ୍ଚ ହେଲା ? ପୁଣି ମେଟ୍ରିକ୍, ଆଇ. ଏ., ବି. ଏ. ପରୀକ୍ଷା ତ ଦୁଇଦୁଇଥର ଦବାକୁ ପଡ଼ିଲା । ତଳିଆ କିରାଣୀରୁ ଉଠି ଏବେ ସିନା ନାଜର ହେଲେ—ନୋହିଲେ ତାଙ୍କ ଦରମା ବା ଥିଲା କେତେ ?

ଉମାଶଶୀ ଭାରି ଅଳଙ୍କାରପ୍ରିୟ । ବର୍ଷକୁ ବର୍ଷ କିଛି ନା କିଛି ନୂଆ ଗହଣା ଗଢ଼େଇବାର ଝୁଙ୍କ ତାଙ୍କର ଥିଲା । ପଢ଼ାଖର୍ଚ୍ଚ, ଗହଣା ଖର୍ଚ୍ଚ, ଖାଇବା ଖର୍ଚ୍ଚ ବାଦେ ଘର ତିଆରି ପାଇଁ ଟଙ୍କା ଆଉ ବଳନ୍ତା କୁଆଡ଼ୁ ? ତା'ପରେ ବଡ଼ ଘରର ଆବଶ୍ୟକତା ବା କ'ଣ ଥିଲା ? ପୈତୃକ ଘର ଯାହା ଥିଲା ସ୍ୱାମୀ ସ୍ତ୍ରୀ ଦୁଇଜଣଙ୍କ ପାଇଁ ତାହା ଥିଲା ଯଥେଷ୍ଟ । ଗୋଟିଏ ପୁଅ—ମାଟ୍ରିକ୍ ପାଶ୍ ପରେ ହରମୋହନ ତାକୁ କଲିକତା ପଠେଇ ଦେଇଥିଲେ ପଢ଼ିବା ପାଇଁ । କଲିକତାରେ ଉମାଶଶୀଙ୍କ ଭାଇ ଅର୍ଥାତ୍ ଆନନ୍ଦର ମାମୁଁର ପାନ ଦୋକାନଟେ ଅଛି । ଆମହାର୍ଷ୍ଟ ଷ୍ଟ୍ରୀଟ୍‌ରେ ଏକ ବଖୁରିକିଆ ଘର ଖଣ୍ଡିକରେ ସେ ରହେ । ସକାଳ ସାତରୁ ରାତି ଏଗାର ପର୍ଯ୍ୟନ୍ତ ଦୋକାନରେ ବସେ । ଘରଟା ଖାଲିପଡ଼ିଥାଏ । ଆନନ୍ଦ ଯାଇ ସେଇଠି ରହି ପଢ଼ା-ପଢ଼ି କଲା । ରିପନ୍ କଲେଜ ସେଇଠୁ ପାଖ । ସେଇ କଲେଜରୁ ଆଇ. ଏ., ବି. ଏ. ପାଶ୍ କରିଛି ଆନନ୍ଦ ।

ବସା ନିକଟରେ ଥାଏ ଏକ ବଡ଼ି ବିଲ୍‌ଡିଂ କ୍ଲବ୍ । ପ୍ରତ୍ୟହ ସନ୍ଧ୍ୟାରେ ଆନନ୍ଦ ସେଠାକୁ ଯାଇ କୁସ୍ତି କସରତ କରେ । ପୋଲିସ ଚାକିରି ପାଇଁ ତା ଦେହର ଗଠନଟା ଏଇ ବଡ଼ି ବିଲ୍‌ଡିଂ କ୍ଲବର ଅବଦାନ । ଆନନ୍ଦର ଇଚ୍ଛା ଥିଲା ବଡ଼ି ବିଲ୍‌ଡିଂରେ ଦିନେ ସେ 'ମିଷ୍ଟର ଇଣ୍ଡିଆ' ହେବ; ମାତ୍ର ସେ ଆଶା ତାର ପୂରଣ

କରୁ ତାର ସୁନ୍ଦର ସ୍ୱାସ୍ଥ୍ୟ ଯୋଗୁଁ ପ୍ରଥମ ଚେଷ୍ଟାରେ ହିଁ ସେ ଡ଼. ଏସ୍. ପି. ଗ୍ଭକର ପାଇଗଲା ।

ପ୍ରତ୍ୟହ ପରି ଆଜି ସକାଳେ ଦୋଳ ଖେଳି ଶାସ୍ତ୍ରୀଙ୍କର ବାପା ଆସିଛନ୍ତି । କେତକୀ ପଖାଳ ଗଣ୍ଡେ ବାଢ଼ି ଖାଇବାକୁ ଯାଉଥିଲା । ଉମାଶଶୀଙ୍କ ଦେହ ସକାଳଠୁ ଭଲ ନଥିବାରୁ ସେ ଶୋଇ ରହିଥିଲେ । ତାଙ୍କର ଯେତେବେଳେ ଖାଇବା ବନ୍ଦ ଆଉ କେଉଁଠି ହେବ କାହିଁକି ? ହରମୋହନ ଅମଳ କେଣ୍ଟିନ୍‌ରେ ଶହାଣ ଦରରେ ମିଲ୍‌ଟେ ଖାଇନେବେ । ଆଉ କେତକୀ ! ପଖାଳ ପାଣି ମନ୍ଦେ ପିଇ ଦନେ ଓଳାଏ କଣ ରହିପାରିବନି ?

ପଖାଳ ସାଙ୍ଗକୁ ଆଗ୍ରହ ଆଉ ପିଆଜ । ବାପା ଆସିଛନ୍ତି ଶୁଣି ପାଟିକୁ ଯାଉଥିବା ହାତର ଗୁଣ୍ଡାଟା ଖସିପଡ଼ିଲା ।

କାହିଁକି ସେ ଆସିଲେ ? ପୁଣି ଅପମାନ ପାଇବାକୁ ? ଏକ ଅଜ୍ଞାତ ପରସ୍ଥିତିର କଳ୍ପନାରେ କେତକୀର ଦେହ ଶୀତେଇ ଉଠିଲା । ସେ ଦାଣ୍ଡ ଦରଜା ପାଖକୁ ଆଗେଇଗଲା । ବାପା ପିଣ୍ଡାରେ ଚେୟାରରେ ବସିଛନ୍ତି । କେତକୀ ଯାଇ ପ୍ରଣାମ କଲା । ନୀଳକଣ୍ଠ ପଗ୍ଭରିଲେ—କଣ ମା' ସବୁ ଭଲ ତ ?

ହଁ—କେତକୀର ସ୍ପଷ୍ଟ ଉତ୍ତର ।

—ଶାଶୂଙ୍କୁ କହ, ଏ ଖରଗୁଡ଼ାକ ଭିତରକୁ ଉଠେଇ ନବାର ବ୍ୟବସ୍ଥା କରିବେ ।

ସେତେବେଳକୁ ତନଜଣଯାକ ଖରଆ ଖରଗୁଡ଼ାକୁ ପିଣ୍ଡା ଉପରେ ଥୋଇ ଗାମୁଛାରେ ଝାଳ ପୋଛୁଛନ୍ତି । କେତକୀ କହିଲା—ପିଣ୍ଡାରେ ରଖିଲ କାହିଁକି, ଭିତରକୁ ନେଇଆସ !

କେତକୀର ନିର୍ଦ୍ଦେଶରେ ଖରଆମାନେ ହାଣ୍ଡିଗୁଡ଼ାକ ଭିତରକୁ ଉଠେଇ ନେଲେ । ଶାଶୂ ତଥାପି ଘର ଭିତରୁ ବାହାରନାହାନ୍ତି । କେତକୀ ଶାଶୂଙ୍କ ଶୋଇବା ଘର ଭିତରକୁ ଗଲା । ଶାଶୂ ଆଖି ବୁଜି ପଡ଼ିରହିଥିଲେ । କେତକୀ ଡାକିଲା—ମା' !

ଉମାଶଶୀ ଘାଇଁକିନା ଗର୍ଜି ଉଠିଲେ । ପୋଡ଼ାମୁହିଁ, ସକାଳଠୁ ଛଟପଟ ହେଇ ଆଖିକୁ ନିଦ ଟିକିଏ ମାଡ଼ିଆସିଥିଲା ନା ନାହିଁ ଭାଙ୍ଗିଦେଲୁ ?

କେତକୀ ଭୟମିଶା ଗଳାରେ କହିଲା—ବାପା ଆସିଛନ୍ତି ।

କେତକୀର ଏ କଥା ସେ ଉମାଶଶୀଙ୍କ କାନରେ ନ ପଶିଲା ତାହା ନୁହେଁ, ତଥାପି ସେ ପୁଣି ପାଟିକରି ପଗ୍ଭରିଉଠିଲେ—କିଏ ଆସିଛି ?

—ବାପା !

ହଠାତ୍ ଉମାଶଶୀ ଧଡ଼ପଡ଼କିନା ଉଠିପଡ଼ିଲେ—ସମୁଧି ଆସିଛନ୍ତି ? କାହାନ୍ତି ?

—ପିଣ୍ଡାରେ ବସିଛନ୍ତି ।

—କ'ଣ କହୁଛୁ, ପିଣ୍ଡାରେ ବସିଛନ୍ତି ? ଗୁ ପୋଡ଼ାମୁହିଁ ତାଙ୍କୁ ଘରଭିତରକୁ ନ ଡାକି ଦାଣ୍ଡପିଣ୍ଡାଟାରେ ବସେଇ ରଖିଛୁ ? କ'ଣ କହିବ ଲୋ ତୋ ବୁଦ୍ଧିକି ? ପୋଡ଼ଯାଉ ତୋ ଝିଅପଣିଆ ! ଛି ଛି..."

ଛି ଛି କହି ସେ ବାହାରକୁ ଉଠିଆସିଲେ । ପିଣ୍ଡାରେ ଚଟ ବଚତ୍ର ମିଠେଇ ହାଣ୍ଡି ଗୁଡ଼ାକୁ ଦେଖି ଟିକଏ ଠିଆହେଇ ଦାଣ୍ଡପିଣ୍ଡାକୁ ଯାଇ କହିଲେ—"କଏ ସମୁଦି ? ବାହାରଟାରେ କାହିଁକି ବସିଛ ମ ? ଭିତରକୁ ଆସ !

ବାହାରୁ ନୀଳକଣ୍ଠ କହିଲେ—ସମୁଦୁଣୀ, ନମସ୍କାର ।

ଉମାଶଶୀ ନମସ୍କାରର ପ୍ରତ୍ୟୁତ୍ତର କରି ସମୁଦିଙ୍କୁ ଭିତରକୁ ଆଣି ବସେଇଲେ । ଘରର ଭଲମନ୍ଦ, ସମୁଦୁଣୀଙ୍କ ଦେହପା କଥା ପଚାରିଲେ—ତା' ପରେ ଉଠିଲା ସମୁଦିଙ୍କ ଖାଇବା କଥା । ଝିଅ ଘରେ ସେ ତ ଖାଇବେ ନାହିଁ—କ'ଣ ଉପାସ ରହିବେ ? ଯଦିଓ ନୀଳକଣ୍ଠ କହିଲେ—ମୋ ଖାଇବା ପାଇଁ ବ୍ୟସ୍ତ ହେବନାହିଁ ସମୁଦୁଣି ! କିନ୍ତୁ ସେଟା କଣ କଥାର କଥା ? ଏ ଘରେ ନ ଖାଇଲେ ପାଖପଡ଼ଶା ଘରେ ତ ଖାଇବେ ! ପୁଣି ତାଙ୍କ ଲୋକଟା ଭାରଅଙ୍କର ତ ଖାଇବା ବ୍ୟବସ୍ଥା କରିବାକୁ ହେବ । ଆରପାରି ସ୍ବାମୀଙ୍କ ଘରେ ଖାଇବାର ବ୍ୟବସ୍ଥା ହେଲା ।

ଉମାଶଶୀ କହିଲେ—ଆସିବା ଆଗରୁ ଟିକଏ ଖବର ପଠେଇଲନି ସମୁଦି !

ନୀଳକଣ୍ଠ କହିଲେ—ହଠାତ୍ ଆସିଲି ସମୁଦୁଣି ! ବାହାଘର ପରେ ଅନେକ ଦିନ ବିତିଗଲଣି । ମନଟା ଭାରି ଗୁଡ଼େଇହେଲା । ଆସିବି ଆସିବି ଭାବୁଥିଲି, ମା'ଙ୍କର କାଳ ହେଇଗଲା...

"ବୁଢ଼ୀଙ୍କ କାମ ସୁରୁଖୁରୁରେ ହେଇଗଲା ତ ?" ଉମାଶଶୀ ପଚାରିଲେ । ଉତ୍ତର ମିଳିବା ପୂର୍ବରୁ ପୁଣି କହିଲେ—"ଝିଅକୁ ନବାପାଇଁ ପଠେଇଥିଲି, ହେଲେ ଝିଅର ଶାଶୁ ତ ଯାଇ କୋରପୁଟରେ । ତା ମତ ବିନା ତ ମୁଁ ପଠେଇ ପାରିନଥାନ୍ତି ତାକୁ । ଚିଠି ଦେଇ ଉତ୍ତର ଆସିବାବେଳକୁ ଯିବାର ଆଉ କଣ ବେଳ ଥାନ୍ତା ? ତା'ପରେ ମା ତ ନୁହେଁ, ବୁଢ଼ୀ ମା—କେତେ କାଳ ବା ଆଉ ବଞ୍ଚିଥାନ୍ତେ । ଢେର ଭୋଗ କଲେ ।"

ନୀଳକଣ୍ଠ ଏଇ ପ୍ରୌଢ଼ା ତରୁଣୀଙ୍କ ମୁହଁକୁ ବାରମ୍ବାର ଚାହୁଁଥିଲେ । ଅନେକ ଦିନ ତଳେ ଯାହାଙ୍କୁ ସେ ଦେଖିଥିଲେ ଏ କ'ଣ ସେଇ ? ନା ବିଶ୍ୱାସ ହୁଏନା । ହୁଏତ ସେ ଦିନର ସେଇ ଉମାଶଶୀ ମରିଯାଇଚନ୍ତି । ତା' ବଦଳରେ ସେ ଦେଖୁଚନ୍ତି

ଆଉ ଏକ ଉମାଶଣୀ, ନାମରେ ମେଳ, ଆଉ ସବୁଥିରେ ଅମେଳ । ସତକୁ ସତ ଏଇ ଉମାଶଣୀ ଯଦି ତାଙ୍କର ଗୃହିଣୀ ହୋଇଥାନ୍ତେ ! ସେ ଆଉ ଭାବିପାରୁନଥିଲେ । ହଠାତ୍ ତାଙ୍କର ଲୀଳାବତୀଙ୍କ କଥା ମନେପଡ଼ୁଥିଲା ।

ଉମାଶଣୀ ଆଉ ଲୀଳାବତୀ ! ଉଭୟ ନାରୀ ସମବୟସ୍କା; କିନ୍ତୁ ଦୁହିଁଙ୍କ ଚରିତ୍ରରେ ଆକାଶ ପାତାଳ ପ୍ରଭେଦ । ଜଣେ ଦେବୀ; ଆଉ ଜଣେ ଦାନବୀ ।

ଉମାଶଣୀଙ୍କ କୁଟିଳ ଚାହାଣି ନୀଳକଣ୍ଠଙ୍କୁ ବ୍ୟତିବ୍ୟସ୍ତ କରୁଥିଲା ।

ନୀଳକଣ୍ଠ କହିଲେ—ସମୁଦୁଣି ! ମାସକ ଭିତରେ ଧାର ଦେବି ବୋଲି କହିଥିଲି । ଡେରି ହୋଇଗଲା । କ୍ଷମା କରିବ । ଧାର୍ ବାବଦ ଟଙ୍କାଟା ନେଇ ମୋତେ ବିଦାୟ ଦିଅ ।

ଉମାଶଣୀ କହିଲେ—ଏ କି କଥା ସମୁଦି ! ଝିଅ ଘରକୁ ଆସି ଗୋଟେ ରାତି ବି ରହିବନି ? ତମ ସମୁଦି ତ କଟକରୁ ଫେରୁ ଫେରୁ ସନ୍ଧ୍ୟା ହୋଇଯିବ । ରାତିଟାରେ ଆଉ ଫେରିବ କେମିତି ?

"ଘରକୁ ମୁଁ ବର୍ତ୍ତମାନ ଏକା । ନ ଫେରିଲେ ଚଳିବ କେମିତି ?"

ଉମାଶଣୀ ହସିଲେ । ଥଟ୍ଟା କରି କହିଲେ—"ମଲା ଯା, ତମେ ଏଇଠି ରାତିଏ ରହିଗଲେ ସମୁଦୁଣୀକୁ କିଏ ନେଇଯିବ ନା କଣ ? ଜୁଆନ ହୋଇଥିଲେ ସିନା ସେ ଭୟ ଥାଆନ୍ତା ? ବୁଢ଼ୀ ବୟସରେ ସେ ଭୟ ନାହିଁ ମ !"

ନୀଳକଣ୍ଠ ଟଙ୍କାର ପୁଡ଼ାଟାକୁ ଉମାଶଣୀଙ୍କ ସାମନାରେ ଥୋଇ ଦେଇ କହିଲେ—ତିରିଶ ହଜାର ଅଛି ।

ଟଙ୍କା ବିଡ଼ାଟାକୁ ଚାହିଁ ଉମାଶଣୀଙ୍କ ମୁହଁରେ ରକ୍ତିମ ଆଭା ଫୁଟିଉଠିଲା । ଆନନ୍ଦର ପାଠ ପଢ଼ିବା ପାଇଁ ସେ ଯେତେ ଟଙ୍କା ଖର୍ଚ୍ଚ କରିଥିଲେ ପ୍ରାୟ ସେତିକି ଟଙ୍କା ତାଙ୍କର ହସ୍ତଗତ ହେଲା । ସେ କଣ୍ଠର ସ୍ୱରକୁ ନରମ କରି କହିଲେ—ସମୁଦି ! ଆମର ଆଉ କେତେ ଧନ ! ଯାହା ରଖିଦେଇ ଯିବା ସବୁ ତ ତୁମ ଝିଅ ଭୋଗ କରିବ ।

ନୀଳକଣ୍ଠ କହିଲେ—ମୁଁ ଦେଇଦବା ପରେ ସେ ସବୁଥିରେ ମୋର ଆଉ ମୁଣ୍ଡ ଖେଳେଇବାର କ'ଣ ଅଛି ? ଏଣିକି ତୁମ ଧନ, ତୁମେ ବୁଝିବ । ହଁ, କହୁଥିଲି, କେତକୀକୁ ମାସକ ପାଇଁ ନେଇଯିବାକୁ । ଅନେକଦିନ ହେଲା ସେ ତା ମା'କୁ ଦେଖିନାହିଁ—ଥରେ ଯାଆନ୍ତା ।

ଉମାଶଣୀ ପ୍ରତିବାଦ ନକରି କହିଲେ—ହଁ ହଁ, ନେଇଯାଅ । ଝିଅ ହୋଇଛି ବାପଘରକୁ ଯିବନି ? କାଲି ତ ପୂର୍ଣ୍ଣିମୀ । ପଅରିଦିନ ଗୁରୁବାର । ଶୁକ୍ରବାର ଦିନ ନେଇଗଲେ ମୋର ଆପତ୍ତି ନାହିଁ ।

ଶାଶୁ ଆଉ ବାପାଙ୍କ ଭିତରେ ଆଲୋଚନା କେତକୀ କଣ ଶୁଣିନଥିଲା ? ତା କୋଠରି ଭିତରେ ଥାଇ ସେ ସବୁ ଶୁଣୁଥିଲା । ଏଇ ଶେଷ କଥାଟା ତା ପ୍ରାଣରେ ଅମୃତ ବର୍ଷଣ କରିଗଲା ଯେମିତି । ମାସକ ପାଇଁ ବାପଘରକୁ ଯିବାର ଅନୁମତି—ଏ ଯେମିତ ତା ପାଖରେ ସବୁଠୁ ବଡ଼ ସୁସମ୍ବାଦ । ଆନନ୍ଦରେ ତାର ଆଖି ଲୋତକାପ୍ଲୁତ ହେଲା ।

ଉମାଶଶୀ ଡାକ ପକେଇଲେ—ବୋହୂଲୋ, ତୋ ବାପା ଏବେ ଚାଲିଯିବେ । ଆ, ମୁଣ୍ଡିଆ ମାରି ଯା ।

ଅବଗୁଣ୍ଠନବତୀ କେତକୀ ଆସି ବାପାଙ୍କୁ ଓ ଶାଶୁଙ୍କୁ ପ୍ରଣାମ ଜଣାଇ ଠିଆ ହେଲା ।

ନୀଳକଣ୍ଠ କହିଲେ—ସମୁଦୁଣୀ, ଶୁକ୍ରବାର ସକାଳେ ସାଧୁ ଆସି ପହଞ୍ଚିବ । ଏଇଠୁ ସବାରି ବ୍ୟବସ୍ଥା କରି ପଠେଇଦବ । ସବାରିବାଲାଙ୍କ ପ୍ରାପ୍ୟ ମୁଁ ସେଠି ଚୁକେଇଦେବ ।

ନୀଳକଣ୍ଠ ଆଉ ଥରେ କେତକୀ ଉପରେ ସସ୍ନେହ ଦୃଷ୍ଟିପାତ କରି ବିଦାୟ ନେଲେ । □□□

# ଏଗାର

କେତକୀକୁ ଦେଖି ଲୀଳାବତୀ ଆଶ୍ୱସ୍ତ ହେଲେ । ତାଙ୍କୁ ଜଣାପଡ଼ିଥିଲା ଯେମିତି ହଜିଯାଇଥିବା ଝିଅଟା ପୁଣି ଫେରିଆସିଛି ।

ଆଉ କେତକୀ ?

ତାର ମନେହେଉଥିଲା—ଯୋଉ ଧୂଳିଖେଳର ସଂସାର ଛାଡ଼ି ସେ ବଡ଼ଦେଶ-ଯାତ୍ରା କରିଥିଲା, ପୁଣି ସେଇ ସଂସାରକୁ ଫେରିଆସି ଅଙ୍ଗ ମନ ତାର ପୁଲକିତ ହେଉଛି । ସେ ପୁଣି ହୋଇଯାଇଚି ପିଲା । ଯୋଉ ସାଙ୍ଗସାଥୀମାନଙ୍କୁ ସେ ଛାଡ଼ି ଯାଇଥିଲା, ସେମାନେ ସବୁ ଠିକ୍ ସେମିତି ସେଇ ଅବସ୍ଥାରେ ଅଛନ୍ତି ।

ସେଇ ପୁରୁଣା ଗାଁ—ପୁରୁଣା ଘର—ପୁରୁଣା ମଣିଷ । ନାହାନ୍ତି କେବଳ ଦୁଇ ଜଣ । ସେପାଖର ଜେଜେବାପା, ଆଉ ଏପାଖର ଜେଜେମା' । ଜେଜେମା' ନ ଥିବାଟା ତାକୁ ଅଲଗା ଲାଗୁଥିଲା । ତଳ ପରସ୍ତଟା ଖାଁ ଖାଁ ଲାଗୁଚି । ସେଇ ପରସ୍ତରେ ଥିଲା ବୁଢ଼ୀଙ୍କ ଶୋଇବାଘର । ବୁଢ଼ୀଙ୍କୁ ରାତିରେ ଡର ଲାଗେ ବୋଲି ମୂଲିଆଟାଏ ରାତିରେ ଖାଇ ତାଙ୍କ ଘର ଦରଜା ମୁହଁରେ ଶୋଉଥିଲା । ବୁଢ଼ୀ ନ ଥିବାରୁ ସେ ବି ଆଉ ଶୋଉନାହିଁ ।

ବାଡ଼ି ଭିତରେହିଁ ବୁଢ଼ୀଙ୍କୁ ସମାଧି ଦିଆଯାଇଛି । ଦଶାହ କର୍ମ ଭିତରେ ନୀଳକଣ୍ଠ ସେଠି ସମାଧିଟିଏ ତିଆରି କରି ତା ଉପରେ ଲେଖି ଦେଇଛନ୍ତି— ଶ୍ରୀମତୀ ବୃନ୍ଦାବତୀ ଦେବୀ—ତଳେ ଜନ୍ମ ଓ ମୃତ୍ୟୁ ତାରିଖ । ନୂଆ ସମାଧି ଆଉ ପାଖକୁ ଜେଜେ ବାପାଙ୍କର ପୁରୁଣା ସମାଧି । ଭାଙ୍ଗି ରୁଜି ଯାଇଥିଲା । ସେଇଟା ମରାମତି ହୋଇ ଚୂନ ବୋଳା ହୋଇ ଯାଇଚି । ଦିନରେ ବାଡ଼ି ପୋଖରୀକୁ ଗଲେ ପୋଖରୀ ସେପଟର ଏଇ ସମାଧି ଦୁଇଟା ଆଖିରେ ପଡ଼େ । ଯେମିତି ବୁଢ଼ା ବୁଢ଼ୀ ଦି'ଜଣ ପରସ୍ପରକୁ ଅନେକ କଥା କହୁଛନ୍ତି । ଏଇ କଥା କହିବାର ଭାଷା କେତକୀ ଅବଶ୍ୟ ବୁଝେନା; କିନ୍ତୁ ନୀଳକଣ୍ଠ ବୁଝନ୍ତି । ସେଇଥିପାଇଁ ବୋଧହୁଏ ସକାଳେ ନିତ୍ୟକର୍ମ ସାରିବାକୁ ଗଲାବେଳେ ସେ ଅଧଘଣ୍ଟାଏ ଧରି ସେଇ ସମାଧି ପାଖରେ ଠିଆ ହୁଅନ୍ତି ।

କ'ଣ ଦେଖନ୍ତି ?

କ'ଣ ଶୁଣନ୍ତି ?

ଦେଖନ୍ତି ଜୀର୍ଣ୍ଣ ଅତୀତର ଭଙ୍ଗାରୁଜା ଛବି । ଶୁଣନ୍ତି ଆଗାମୀର କଳରବ

ଗୋଟାଏ ପୁରୁଷ ଲୋପପାଇଗଲା ।

ଆଉ ଗୋଟାଏ ପୁରୁଷ ତାର ସ୍ଥାନ ଦଖଲ କଲା । କାଳର ଚରନ୍ତନ ଗତି ଏ । "ଜାତସ୍ୟହ୍ଧ ଧ୍ରୁବୋ ମୃତ୍ୟୁ" । ତଳ ବରଡ଼ା ଖସେ—ଉପର ବରଡ଼ା ହସେ, ମଝି ବରଡ଼ା ଥାଇ କହେ—ରହରେ ରହ ତୋ ଦନକାଳ ଆସେ ।

କେତକୀ ଆସିଚ ବୋଲି ସେ ଅନେକ ଦୁଶ୍ଚିନ୍ତାରୁ ମୁକ୍ତ ପାଇଚନ୍ତି— ଝିଅଟା ସବୁବେଳେ ତାଙ୍କ ଆଖି ଆଗରେ ରହନ୍ତା କି !

ଆପଣା ହସ୍ତେ ଜିହ୍ୱା ଛେଦ···ସେ ତ ନଜେ ତାକୁ ଦୂରେଇ ଦେଇଛନ୍ତି— ପୁଣି ଆଜ ଏକଥା ଭାବୁଛନ୍ତି କାହିଁକି ?

ନା, ବବାହତା ଝିଅ ସଂପର୍କରେ ଏକଥା ଭାବବା ଅନ୍ୟାୟ, ଅସଙ୍ଗତ ।

ଏଇ ତ ବେଶ୍ । ଜଞ୍ଜାଳବହ୍ୱାନ ଜୀବନ ।

ନୀଳାବତୀ ଅସୁସ୍ଥ ହେଇପଡ଼ିଛନ୍ତି । ଗୋଟିଏ କାମ ଗିବା ପରେ ଆଉ ଗୋଟିଏ କାମର ଖଟଣି । ଦୁର୍ବଳ ସ୍ୱାସ୍ଥ୍ୟର ମଣିଷ ସେ । ବରଦାସ୍ତ କେମିତ କରନ୍ତେ !

ହଠାତ୍ ହେଲା ତାଙ୍କୁ ଜ୍ୱର । ନୀଳକଣ୍ଠ ନଜେ ଯାଇ ପାଞ୍ଚ ମାଇଲ ଦୂରରେ ଥିବା ଡାକ୍ତରଖାନାରୁ ଔଷଧ ଆଣିଛନ୍ତି ।

ଜ୍ୱର ଉପଶମ ହେଉନାହିଁ । କେତକୀର ଯାଇବୁଲା ବନ୍ଦ ହେଇଯାଇଚ । ମାଆ ପାଖରେ ଜଗି ବସିଚ ସେ । ସେ ଆସିବାଠାରୁ କନକ ତା' ସାଙ୍ଗେ ସାଙ୍ଗେ ଅଛୁ । ଘରେ କେତକୀକୁ ଡର ଲାଗିବ ବୋଲି ସେ ଆସି ତା' ପାଖରେ ଶୋଉଛୁ । ଆଉ ସେଇ ଶୋଇବା ଭିତରେ କେତକୀ ତାର ନୂତନ ଅଭିଜ୍ଞତା କଥା କହ କନକକୁ ଉତ୍ତେଜିତ କରୁଚୁ । ମାଆଙ୍କୁ ଜ୍ୱର ହେବାଠୁ ଦୁଇଜଣ ଆଉ ଏକାନ୍ତରେ କଥାବାର୍ତ୍ତା କରପାରୁ ନାହାନ୍ତି । ମାଆଙ୍କ ରୋଗଶଯ୍ୟା ପାଖରେ ଦୁଇଜଣଯାକ ଆଖି ବୁଜି ପଡ଼ଯାଉଛନ୍ତି, ସେ ପୁଣି ଅଳ୍ପ ସମୟପାଇଁ । ବାପା ସାରା ରାତି ଇଜ ଚେୟାର୍ଟା ଉପରେ ବସିରହ ଆଖି ରଙ୍ଗା କରୁନାହାନ୍ତି ।

ସ୍ନେହମୟୀ ଜନନୀ ! ପୃଥିବୀରେ 'ଜନନୀ'ଠାରୁ ମଧୁରତମ ଆଉ କ'ଣ ଥାଇ ପାରେ ? ସନ୍ତାନ ପାଇଁ ସେ ପରା ସର୍ବଂସହା ।

ଅବସ୍ଥା କ୍ରମେ ଖରାପ ଆଡ଼କୁ ଯାଉଛୁ । ଗୋଡ଼ ହାତ ଥଣ୍ଡା—କଞ୍ଚା ପାଣି ପରି । କେତକୀ ଯାଇ ନୀଳକଣ୍ଠଙ୍କୁ କହିଲା—ବାପା, ଏମିତ ଯାଇ ଔଷଧ ନେଇ ଆସିଲେ ହେବନାହିଁ । ଡାକ୍ତରବାବୁଙ୍କୁ ଡାକ, ସେ ଆସି ଦେଖନ୍ତୁ ।

ଲୀଳାବତୀ ଅସୁସ୍ଥ ହୋଇପଡ଼ିବା ପରେ ନୀଳକଣ୍ଠଙ୍କ ମୁଣ୍ଡ ଯେମିତି ଆଉ କାମ କରୁ ନଥିଲା । ରୋଗୀକୁ ନ ଦେଖି ଡାକ୍ତର ଯେଉଁ ଔଷଧ ଦିଅନ୍ତି ସେଥିରେ ଦୈବାତ୍ ଆରୋଗ୍ୟ ହୋଇପାରେ; ମାତ୍ର ସାଂଘାତିକ ରୋଗପାଇଁ ଡାକ୍ତରୀ-ପରୀକ୍ଷାର ପ୍ରୟୋଜନୀୟତା ଅଛି—ଏଇ ସାମାନ୍ୟ କଥାଟା ଏ ପର୍ଯ୍ୟନ୍ତ ନୀଳକଣ୍ଠଙ୍କ ମନରେ ଜାଗ୍ରତ ହୋଇନଥିଲା । ଜିଅ କଥାର ଗୁରୁତ୍ୱ ହଠାତ୍ ଉପଲବ୍ଧି କରି ସେ ଯାଇ ଡାକ୍ତରବାବୁଙ୍କୁ ଡାକିଆଣିଲେ । ପାଖପାଖି ଦୂରରୁ ଆସିବାପାଇଁ ଶଗଡ଼ ଛଡ଼ା ଅନ୍ୟ ଯାନବାହନର ସୁବିଧା ନାହିଁ । ଡାକ୍ତର ଆସିବାକୁ କେତକୀ ଉତ୍କଣ୍ଠାର ସହିତ ଅପେକ୍ଷା କରି ରହିଥାଏ । କେତେବେଳେ ଆସିବେ ? ମା' ଯେ ଆଉ ଡାକଲେ ଶୁଣ୍ଡ-ନାହାନ୍ତି । ଯଥା ସମୟରେ ଡାକ୍ତର ଆସି ପହଞ୍ଚିଲେ । ରୋଗୀକୁ ପରୀକ୍ଷାକରି ଉପଯୁକ୍ତ ଚିକିତ୍ସାର ବ୍ୟବସ୍ଥା କଲେ । ରୋଗ ଉପଶମ ହେବାକୁ ଲାଗିଲା । ଲୀଳାବତୀ ଆଖି ଖୋଲି ଚାହିଁଲେ । ଦୁଇଦିନ ପରେ ଡାକ୍ତର ଘୋଷଣା କଲେ—ରୋଗୀ ବିପଦ-ମୁକ୍ତ ।

ନୀଳକଣ୍ଠଙ୍କ ମୁଣ୍ଡ ଉପରୁ ପଥରର ବୋଝଟା ଓହ୍ଲେଇଗଲା । ସେ କାଲି ଲୀଳାବତୀଙ୍କ ଅସୁସ୍ଥତା ଖବର ଜଣାଇ ଲାବଣ୍ୟକୁ ତାର କରିଥିଲେ । ଆଜି ପୁଣି ଯାଇ ତାର କଲେ—ବ୍ୟସ୍ତ ହେବୁନାହିଁ । ମା' ଭଲ ହୋଇ ଆସୁଛି ।

ଦିଲ୍ଲୀରୁ ପୁଣି ଫେରନ୍ତା ତାର ଆସିଲା—ଉଦ୍‌ବିଗ୍ନ । ମା'ଙ୍କ ସ୍ୱାସ୍ଥ୍ୟ ବିଷୟରେ ତାର କର । ଦରକାରପଡ଼ିଲେ ଯିବି ।

ଫେରନ୍ତା ତାରକୁ କେତକୀ [illegible] ବାପାଙ୍କୁ ଶୁଣେଇଦେଲା ।

ତା ସଙ୍ଗେ ସଙ୍ଗେ କହିଲା—ବାପା, ନାନୀକୁ ତାର କର, ସେ ଆସୁ । ବାପା କହିଲେ—ନାନୀ କ'ଣ ପାଖରେ ଅଛି ମା ! ମା' ତ ଭଲହୋଇ ଆସୁଛି । ଆଉ ତ ଭୟର କାରଣ କିଛି ନାହିଁ । ଅଯଥାରେ ତାକୁ ବ୍ୟସ୍ତ କରେଇ ଡାକିବା···

କେତକୀର ଏ ପ୍ରସ୍ତାବଟା ମା' ପାଇଁ ଯେତେ ନୁହେଁ, ନିଜପାଇଁ ତା'ଠୁ ଅଧିକ । ନାନୀ ସହିତ ଥରେ ଦେଖା ହୋଇଗଲେ ମଜା ହୁଅନ୍ତା । ଏ ଦିଗରେ କେତକୀକୁ ବେଶି ଉତ୍ସାହିତ କରିଚି କନକ ।

ବାପା ପୁଣି କହିଲେ—ତୋ ବୁଢ଼ୀମା କାମକୁ ତ ସେ ଆସିଥିଲା, ପୁଣି ଆସିବା କ'ଣ ଏଡ଼େ ସହଜ ?

କେତକୀ ତାର ଭିତରର ଇଚ୍ଛାଟାକୁ ପ୍ରକାଶ କରି କହିଲା—ଆସିଲେ ମୋ ସହିତ ତ ଦେଖା ହୋଇପାରନ୍ତା ! ମୁଁ କଣ କେବେ ଦିଲ୍ଲୀଯାଇପାରିବି ତାକୁ ଦେଖାକରିବା ପାଇଁ !

ରକ୍ତର ରକ୍ତ ପ୍ରତି ଆକର୍ଷଣ, ଭଉଣୀର ଭଉଣୀ ପ୍ରତି ମମତା—ମଝିରେ ବାପା ପ୍ରତିବନ୍ଧକ ହେବେ କାହିଁକି ? ଶେଷରେ କେତକୀର କଥା ହିଁ ରହିଲା । ଭୁବନ ଆସି ପହଞ୍ଚିବାପାଇଁ ଲବଣ୍ୟଙ୍କୁ ତାର କରାଗଲା ।

ଖାଲି ଲବଣ୍ୟ ନୁହେଁ, ତା' ସହିତ ଶ୍ରୀକାନ୍ତ ମଧ୍ୟ ଆସି ପହଞ୍ଚିଲା । ଲବଣ୍ୟ ଜାଣି ନଥିଲା କେତକୀ ଏଠାରେ ଅଛି ବୋଲି । ତାକୁ ଦେଖି ସେ ଯେମିତି ସ୍ୱର୍ଗ ପାଇଗଲା । ହସି ହସି ପଚାରିଲା—କିରେ, ତୁ କେବେ ଆସିଲୁ ? ତୁମ କାର୍ କଣ ହେଲା ?

'କାର୍' କଥା ଶୁଣି କେତକୀର ମୁହଁ ଶୁଖିଗଲା । କି ଲଜ୍ଜା ! ନାନୀ ତାହା ହେଲେ ସମସ୍ତ ବୃତ୍ତାନ୍ତ ଜାଣିଛି । ବିଚାରୀ କେତକୀ ଏ ଯାଏ ଜାଣି ନଥିଲା ଯେ—'କା'ର୍' ଦଆସିବା ସଂପର୍କରେ ନାନୀର ଭୂମିକା କ'ଣ ! ଯେତେବେଳେ ଜାଣିଲା ଭଉଣୀ ଭଣୋଇଙ୍କ ପାଖରେ କୃତଜ୍ଞତାରେ ତା' ମୁଣ୍ଡ ନଇଁଗଲା । ତା' ସୁଖପାଇଁ ସେମାନଙ୍କର ଏ ତ୍ୟାଗ ବାସ୍ତବିକ୍ ଅପୂର୍ବ ।

ଶାଶୁଘରକୁ ଯାଇ କେତକୀ ସ୍ୱାସ୍ଥ୍ୟର ଉନ୍ନତି ଘଟିଛି । କେତକୀର ଅନୁଗାମିନୀ କନକର ମଧ୍ୟ ତଦନୁରୂପ ଅବସ୍ଥା । ସେ ଯେମିତି ଚନ୍ଦ୍ରକଳା ବଢ଼ିବା ପରି ବଢ଼ିବାରେ ଲାଗିଛି । ଅପର ପକ୍ଷରେ ଲବଣ୍ୟର ଠିକ୍ ଓଲଟା ଅବସ୍ଥା । ସେ କ୍ଷୀଣ ହେଇଯାଉଛି । ମୁହଁ ଦେଖିଲେ ଜଣାଯାଉଛି ରକ୍ତଶୂନ୍ୟତା । କେତକୀ ତ ପ୍ରଥମେ ଦେଖି ଚମକିପଡ଼ିଲା । ଏ କଣ, ଦେହ ଖରାପ ଥିଲା ନା କ'ଣ ? ଖାଲି କ'ଣ ଦେହ ଖରାପରୁ ଦେହ କ୍ଷୀଣ ହୁଏ ? ମନ ଖରାପ ମଧ୍ୟ କ୍ଷୀଣତ୍ୱର ଏକ କାରଣ । ଲବଣ୍ୟର ମନରେ ଅସ୍ଥିରତା ବଢ଼ିଯାଉଛି । ସବୁ କିଛି ଥାଇ ମଧ୍ୟ ସେଇ ଗୋଟିକର ଅଭାବରେ ସେ ଦୁଃଖିନୀ ।

ଅସୁସ୍ଥା ମା' ସୁସ୍ଥ ହେଇ ଆସୁଛନ୍ତି । ଉଠିଲେଣି—କିଛିଟା ଚୁଲବୁଲ ମଧ୍ୟ କଲେଣି । ଦୁଇ ଝିଅଙ୍କୁ ଏକାଠି ଦେଖି ସେ ଆହୁରି ଶୀଘ୍ର ରୋଗମୁକ୍ତ ହେଉଛନ୍ତି । ଡାକ୍ତରଙ୍କ ପରାମର୍ଶକ୍ରମେ ଭାତ ଖାଇଲେଣି । ନୀଳକଣ୍ଠଙ୍କର ଆଉ ଦୁର୍ଭାବନା ନାହିଁ ।

କିନ୍ତୁ ଦୁର୍ଭାବନା ନଥିବା ବେଳେ ହିଁ ଦୁର୍ଘଟଣା ଘଟେ । ମା' ସୁସ୍ଥ ହେଇ ଆସୁଥିବା ବେଳେ ହଠାତ୍ କେତକୀର ଅସୁସ୍ଥତା ପୁଣି ସମସ୍ତଙ୍କୁ ବିଚଳିତ କଲା । କେଣେ କିଛି ନାହିଁ, ଭଲ ମଣିଷଟା, ସେଦିନ ଭାତ ଖାଇ ଉଠିବାବେଳକୁ ବାନ୍ତିର ସୁଅ ଛୁଟିଲା । ବେଦମ ବାନ୍ତି କରି କରି ସେ ଦେହୋସ ପ୍ରାୟ । ସମସ୍ତଙ୍କ ଅକଳ ଗୁଡ଼ୁମ୍ । ସାଇକେଲ ଚଢ଼ି ସାଧୁ ଧାଇଁଲା ଡାକ୍ତରଖାନା । ଡାକ୍ତରବାବୁ କାଳ-ବିଳମ୍ବ ନକରି ଆସି ପହଞ୍ଚିଲେ । ପରୀକ୍ଷା କରି ଯାହା କହିଲେ ସେଥିରେ ନିରାନନ୍ଦ ପରିବର୍ତ୍ତେ ଆନନ୍ଦର ମାତ୍ରା ହିଁ ଥିଲା ଅଧିକ ।

କେତକୀର ଗର୍ଭର ଲକ୍ଷଣ ।

ମା' ଖୁସି । ବାପାଙ୍କର ପ୍ରତିକ୍ରିୟା ନାହିଁ । ନାହିଁ କାହିଁକି ଅଛୁ, ବରଂ ବିପରୀତ ଦିଗରେ । ଏତେ ଦିନରେ ଝିଅ ସେ ପୁଣି ମା ହେବାକୁ ଯାଉଛୁ ! ଏହା ଅମାନୁଷିକ ।

ଲବଣ୍ୟ ମନରେ ଭାବାନ୍ତର । ଏବଠୁ ସେ ଆଉ ମୁହଁ ଦେଖେଇବ କେମିତି ? କେତକୀ ନିଜେ ମଧ୍ୟ ଏଭଳି ଏକ ପରିସ୍ଥିତିର ସମ୍ମୁଖୀନ ହୋଇ ପାରୁନାହିଁ । ସେ ଭାବୁଚି ମା ହେବା ଭାରି ଲାଜର କଥା । ବାପା ମା ତା ବିଷୟରେ କଣ ଭାବୁଥିବେ !

ଏ ଗୁରୁଜନଙ୍କର ଏଇପରି ଗୁରୁପ୍ରକାର ଚିନ୍ତା; କିନ୍ତୁ କନକର ? କନକ ଯେମିତି କେତକୀକୁ ଇର୍ଷା କରିବାକୁ ଆରମ୍ଭ କରିଛୁ । ଦୁହେଁ ସମବୟସୀ କିନ୍ତୁ ଦୁହିଁଙ୍କ ଅବସ୍ଥା ଭିତରେ ବିରାଟ ତାରତମ୍ୟ । ଜଣେ ଅଇସୁଲକ୍ଷଣୀ ସଧବା ସୀମନ୍ତିନୀ । ଆଉ ଜଣେ ଫଟାକପାଳୀ ବିଧବା ହତଲକ୍ଷ୍ମୀ । ରୂପ ଆଉ ସ୍ୱାସ୍ଥ୍ୟରେ ଉଭୟଙ୍କ ମଧ୍ୟରେ ବହୁ ସାମଞ୍ଜସ୍ୟ ଥାଇ ବି ସେ ରୂପ ଆଉ ସ୍ୱାସ୍ଥ୍ୟର ବିନିଯୋଗରେ ଅନେକ ପାର୍ଥକ୍ୟ । ଜଣେ ସ୍ୱାମୀ ଦେବତାର ଭୋଗପାଇଁ ସବୁ ଉତ୍ସର୍ଗ କରିଛୁ, ଏବଂ ଅନ୍ୟ ଜଣକର ଦୀର୍ଘଶ୍ୱାସରେ ଚାରିଦିଗର ବାୟୁମଣ୍ଡଳ ଉଷ୍ଣ ହୋଇ ନିଜକୁ ଜାଳୁଚି ଓ ଅନ୍ୟକୁ ଜାଳୁଚି ।

କେତକୀର ଶାଶୁଘରୁ ଲୋକ ଆସି ପହଞ୍ଚିଛୁ । ଉମାଶଶୀ ଖବର ଦେଇଛନ୍ତି —ଆନନ୍ଦ ଆସିଛୁ, ବୋହୂକୁ ସାଙ୍ଗରେ ନେଇଯିବ । ଶୀଘ୍ର ପଠେଇଦିଅ ।

ଝିଅ ସ୍ୱାମୀ ସହିତ ଯିବ—ଏହାଠୁ ଆନନ୍ଦର କଥା ଆଉ କ'ଣ ଅଛୁ ? କେତକୀ ଚାଲିଗଲା । ତା'ପରେ ଲବଣ୍ୟର ପାଳି । ଦୁଇଦିନ ପରେ ସେ ବି ଚାଲିଗଲା । ଯିବାବେଳେ କନକକୁ କହିଗଲା—ଆମେ ସବୁ ଚାଲିଯାଉଚୁ । ତୁ ଟିକିଏ ବାପାଙ୍କ ଦେଖାଶୁଣା କରିବୁ ।

କନକର ମୁହଁ ଥମଥମ ହୋଇ ଆସିଲା । ମେଳଭଙ୍ଗ । ପୁଣି ଆରମ୍ଭ ହେବ ତାର ଦୁର୍ବିସହ ଜୀବନ । ଆଉ ସ୍ୱା' ଭିତରେ ପୁଣି ଶାଶୁ ଯଦ ନେଇଯାଆନ୍ତି...

ଲବଣ୍ୟ ଆଉ ଶ୍ରୀକାନ୍ତ ଯେଠୁ କଟକ ଆସିଲେ । ଦି' ଦିନ ରହି ଭଦ୍ରକାହାଜ ଧରିବେ ।

ପହଞ୍ଚିବା ଦିନ ଖିଆପିଆ ସରିବା ପରେ ରଙ୍ଗଲତା କହିଲେ—ବୋହୂ ! ଧବଳେଶ୍ୱର ପଠାରେ ଜଣେ ସାଧୁ ଆସି ସାତଦିନ ହେଲା ଯଜ୍ଞ କରୁଛନ୍ତି । ଯଜ୍ଞ ଆଉରି ସାତଦିନ ଚାଲିବ । ବହୁଲୋକ ଯାଇ ନିଜର ମନସ୍କାମନା ପୂରଣ କରି ଫେରୁଚନ୍ତି । କାଲି ସକାଳେ ଆମେ ଟିକିଏ ଯାଇ ମୁଣ୍ଡିଆ ମାରି ଆସିଲେ ହୁଅନ୍ତାନି ?

ଲବଣ୍ୟ ଶାଶୁଙ୍କ କଥାର ତାତ୍ପର୍ଯ୍ୟ ବେଶ ବୁଝିପାରିଲା । ରାତିରେ ଚୁପି ଚୁପି ଶ୍ରୀକାନ୍ତ କାନରେ କହିଲା—ତୁମ ବଂଶରେ କିଛି ପୁଅଟିଏ ଦରକାର ନା ?

ଶ୍ରୀକାନ୍ତ କହିଲା—କାହିଁକି ଯେ ତମେ ସେସବୁ ବାଜେକଥାରେ ମୁଣ୍ଡ ଖେଳାଅ ? ଏଠିକି ଆସିଲେ, ତୁମ ମୁଣ୍ଡକୁ ସେଇସବୁ ଭୂତ ଲାଗେ କାହିଁକି ?

ଲବଣୀ କହିଲା—ମା' କହୁଛନ୍ତି, କାଲି ସକାଳେ ଏଇଥିପାଇଁ ଆମେ ଧବଳେଶ୍ୱର ସାଧୁବାବାଙ୍କ ପାଖକୁ ଯିବୁ । ସେ କୁଆଡ଼େ ଅନେକଙ୍କ ମନୋବାଞ୍ଛା ପୂରଣ କରୁଛନ୍ତି ।

ଆବହମାନକାଳରୁ ପୃଥିବୀ ବିସ୍ତାରିତ ଏଇ 'ସନ୍ତାନ'ମାନଙ୍କ ପାଇଁ । ମଣିଷ, ପଶୁ, ପକ୍ଷୀ, ଉଦ୍ଭିଦର ବଂଶଧରମାନେ ନ ଥିଲେ ପୃଥିବୀ କେବେଠୁଁ ଜଡ଼-ପିଣ୍ଡରେ ପରିଣତ ହେଇସାରନ୍ତାଣି । କଳା ବିଜ୍ଞାନ ସଭ୍ୟତା ପ୍ରଗତି ଆସନ୍ତା କୋଉଠି ପୃଥିବୀରେ ଯଦି 'ଜନ୍ମ'ର ପ୍ରକ୍ରିୟା ନଥାନ୍ତା ? ଏହାଛଡ଼ା ହିନ୍ଦୁର ସେଇ ଆଦିମ ସଂସ୍କାର । ସ୍ୱର୍ଗ ନର୍କର ପରିକଳ୍ପନା । ପିଣ୍ଡଦାନ । ଅତ୍ୟାଧୁନିକ ଶ୍ରୀକାନ୍ତର ହୁଏତ ଦରକାର ନାହିଁ; ମାତ୍ର ପିତା ବିଷ୍ଣୁପଦଙ୍କର ? ତାଙ୍କ ପିତା, ପିତାମହ, ମାତା, ମାତାମହମାନଙ୍କର ? ସେମାନେ ପିଣ୍ଡ ପାଇବେ କେମିତି ?

ଖୁବ୍ ପ୍ରତ୍ୟୁଷରୁ ଉଠି ବୋହୂକୁ ଗାଧୋଇପାଧୋଇ ମା ରଙ୍ଗଲତା ବାହାରି ପଡ଼ିଲେ । ଏକା ଏକା କେମିତି ଯିବେ ? ମାଆଙ୍କ ଆଦେଶରେ ଶ୍ରୀକାନ୍ତକୁ ବି ଯିବାକୁ ପଡ଼ିଲା ।

ତା ପରଦିନ କଟକଚଣ୍ଡୀ ମନ୍ଦିରରେ ପୂଜା—ଶାଶୁ, ବୋହୂ, ଶ୍ରୀକାନ୍ତ ।
ସେଠାରୁ ଫେରି ଡାକ୍ତର ପରାମର୍ଶ ।

ବୋହୂ ଦିଲ୍ଲୀ ଯିବା ପୂର୍ବରୁ ସନ୍ତାନ ହବାଟାକୁ ନିଶ୍ଚିତ କରେଇ ନବାକୁ ଚାହାନ୍ତି ରଙ୍ଗଲତା ।

ମା'ଙ୍କର ଏସବୁ କାର୍ଯ୍ୟକୁ ଶ୍ରୀକାନ୍ତ ଯଦିଓ ମନେ ମନେ ସମର୍ଥନ କରୁ ନଥିଲା; କିନ୍ତୁ ପ୍ରକାଶ୍ୟରେ ସେ କିଛି କହିପାରୁନଥିଲା । ସନ୍ତାନ ନ ହବାର ଦୋଷଟା କ'ଣ କେବଳ ଲବଣୀର ? ଶ୍ରୀକାନ୍ତର ବି ତ ଏ ଦିଗରେ ଦାୟିତ୍ୱ କମ୍ ନୁହେଁ ।

ପରିବେଷ୍ଟନୀର ଶୃଙ୍ଖଳରୁ ମଣିଷର ମୁକ୍ତିନାହିଁ । ତୁମେ ସଭ୍ୟ ହେଇପାର, ବିଲାତ ଆମେରିକାରେ ଯାଇ ବସବାସ କରିପାର; କିନ୍ତୁ ତୁମ ଜନ୍ମ ସମୟର ପରିଧିରୁ ବାହାରିବା ତୁମ ପକ୍ଷରେ କଷ୍ଟକର ହେଇପଡ଼େ । ବିଲାତ, ଆମେରିକାରେ ରହି ସେମାନଙ୍କ ଚାଲିଚଳଣିକୁ ଯେତେ ଅନୁସରଣ କଲେ ମଧ୍ୟ ତୁମେ ରହିଯାଅ ସେଇ ଭାରତୀୟ ହେଇ । ପୁଣି ପ୍ରଭେଦ ଉଠେ ଧର୍ମ ଧର୍ମରେ, ବର୍ଣ୍ଣ ବର୍ଣ୍ଣରେ, ଜାତି ଜାତିରେ... ଠିଆ ହୁଏ ବିରାଟ ପାଚେରି । ଶତାବ୍ଦୀ ଶତାବ୍ଦୀ ଧରି ମଣିଷ ମନରେ ଯାହା ଲେଖି ହୋଇଯାଏ, ଉତ୍ତର ପୁରୁଷମାନେ ଉତ୍ତରାଧିକାର ସୂତ୍ରରେ ପ୍ରଥମେ ସେଇଟାକୁ ହିଁ ଗ୍ରହଣ କରନ୍ତି । ବିଜ୍ଞାନର ପ୍ରଭାବରେ ହୁଏତ ଏ ଅବସ୍ଥାର ପରିବର୍ତ୍ତନ ଘଟିବ; କିନ୍ତୁ ସେଥି-ପାଇଁ ଦରକାର ଆହୁରି ଅନେକ ସମୟ—ଆହୁରି ଅନେକ ଶତାବ୍ଦୀ । ସେତେବେଳକୁ

ସୂର୍ଯ୍ୟ ହୁଏତ ଚନ୍ଦ୍ରରେ ପରିଣତ ହୋଇଥିବ, ଆଉ ଚନ୍ଦ୍ର ପରିଣତ ହୋଇଥିବ ଅସଂଖ୍ୟ ତାରାରେ । ସମୁଦ୍ରର ଲବଣାକ୍ତ ଜଳ ମଧୁରତାରେ ଭରିଯାଇଥିବ । ଶ୍ରୀଅରବିନ୍ଦଙ୍କ ଭାଷାରେ ମଣିଷ ହୋଇଥିବ 'ଅତିମାନସ' 'କଚ୍ଛପ'କୁ ଯେମିତି ଏପାଖ ସେପାଖ ଦୁଇ ପାଖରୁ ପଢ଼ିଲେ ସେଇ 'କଚ୍ଛପ' ହୁଏ, କମଳା ଲେମ୍ବୁର ବୃନ୍ତଟିରେ ଗୋଟିଏ ଛିଦ୍ରରୁ ଯାତ୍ରା କଲେ, ଯାତ୍ରା ଶେଷରେ ପୁଣି ଯେମିତି ଆସି ସେଇ ଛିଦ୍ରରେ ପହଞ୍ଚିବାକୁ ପଡ଼େ, ମଣିଷର ଯାତ୍ରା ଠିକ୍ ସେମିତି ଯେଉଁଠୁ ଆରମ୍ଭ ହୋଇଥାଏ, ପୁଣି ଠିକ ସେହି ସ୍ଥାନରେ ହିଁ ତାର ଶେଷ ହୁଏ । ଜନ୍ମବେଳେ ଅନ୍ଧାର ନିଆଁ ଜଳେ, ମଲାବେଳେ ଚିତାନଳ । ହୁଏତ ସ୍ରଷ୍ଟା ହିଁ ନିଆଁ ।

ନ'ଟା ଦଶ ଉଡ଼ାଜାହାଜ ଯୋଗେ ସେମାନେ ଦିଲ୍ଲୀ ଯାତ୍ରା କଲେ । ଭୁବନେଶ୍ୱର ଉଡ଼ାଜାହାଜ ପଡ଼ିଆକୁ ବାପା, ମା' ଉଭୟେ ଆସିଥିଲେ । କଲିକତାମୁଖୀ ଉଡ଼ାଜାହାଜ ବଙ୍ଗୋପସାଗର ଉପର ଦେଇ ଯାତ୍ରା କଲାବେଳେ ଲାବଣ୍ୟର ମନେ ହେଉଥିଲା ଯଦି ବା ଉଡ଼ାଜାହାଜଟା ଅତଳ ଦରିଆ ଭିତରେ ଖସିପଡ଼ିବ । ପାଖରେ ବସିଥିବା ଶ୍ରୀକାନ୍ତଙ୍କୁ ବୁଦ୍ଧି ନାଶ ମାତ୍ରା ଆସୁଥିଲା । ବଙ୍ଗୋପସାଗରରୁ ସୁନ୍ଦରବନ ଉପର ଦେଇ ବିମାନ ଯାଉଥିଲା କଲିକତା । ତଳେ କଲିକତା ସହରରେ ଜଳୁଥିଲା ସଂଖ୍ୟାହୀନ ବତି । ମନେହେଉଥିଲା ଉପରେ ଆକାଶ—ତଳେ ଆକାଶ- ମଝିରେ ବିମାନ ଚାଲିଛି । କଲିକତା ଏୟାର ପୋର୍ଟରେ ବିମାନ ଓହ୍ଲାଇବା—ବେଳକୁ ପ୍ରାୟ ଛ'ଟା ବାଜି ଯାଇଥିଲା । ଆଠଟାବେଳେ ପୁଣି ଦିଲ୍ଲୀଗାମୀ ସୁବୃହତ ବୋଇଂ ବିମାନ କଲିକତା ବିମାନ ବନ୍ଦର ଛାଡ଼ିବ ।

ଶ୍ରୀକାନ୍ତ ଆଉ ଲାବଣ୍ୟ ଏୟାରପୋର୍ଟ ରେଷ୍ଟୁରାଣ୍ଟକୁ ଗଲେ । ପୋଚ, ସେଣ୍ଡୱଇଚ୍, ଚାହା ଖାଇ ବୋଇଂ ଭିତରେ ପଶିଲେ । ବିମାନ ଛାଡ଼ିବା ପରେ ପରେ ହିଁ ଲାବଣ୍ୟକୁ ନିଦ ଲାଗିଯାଇଥିଲା । ହଠାତ୍ ତାର ନିଦ ଭାଙ୍ଗିଗଲା ଯେତେବେଳେ ଏୟାର ହୋଷ୍ଟେସ୍ ଘୋଷଣା କଲା—ବିମାନ ବର୍ତ୍ତମାନ ବାରଣସୀ ଉପର ଦେଇ ଯାଉଛି । ବାରଣସୀ ସହରର ଆଲୁଅମାଳା ଆଖିକୁ ଦେଖାଯାଉଥିଲା । ଦିଲ୍ଲୀ ଆଉ ଘଣ୍ଟାକର ରାସ୍ତା ।

ଶ୍ରୀକାନ୍ତ ଆଉ ଲାବଣ୍ୟ—ଉଭୟଙ୍କ ମୁହଁ ଚିନ୍ତାଗ୍ରସ୍ତ ଥିଲା—ମନ ଥିଲା ଭାରାକ୍ରାନ୍ତ । କେମିତି ଏକ ଅସ୍ୱସ୍ତିକର ଚିନ୍ତା ଉଭୟଙ୍କୁ ବିବ୍ରତ କରୁଥିଲା ।

ଦିଲ୍ଲୀ ବିମାନ ବନ୍ଦରରେ ବିମାନ ଓହ୍ଲାଇଲା ରାତି ଦଶଟାବେଳେ । କାର୍‌ରେ ବସି ସେମାନେ ବିନୟ ମାଉସୀଙ୍କୁ ଯାଉଥିବାବେଳେ ଶାନ୍ତସହର ସେମାନଙ୍କ ପାଖରେ କୌଣସି ନୂତନ ସମ୍ବାଦ ପରିବେଷଣ କରୁନଥିଲା । ମନେ ହେଉଥିଲା ସେମାନେ ପୁଣି ଫେରିଆସିଛନ୍ତି ସେଇ ଗତାନୁଗତିକତା ଭିତରକୁ ।

## ବାର

କେତକୀ ଆସିବା ପରେ ଆନନ୍ଦର ଜୀବନଧାରାରେ ସାମାନ୍ୟ ପରିବର୍ତ୍ତନ ଘଟିଛି । ତାର ସେଇ ବେପରୁଆ ଲାଗାମହୀନ ଜୀବନର ଉଦ୍ଦାମତା କମିଆସିଛି । ନକ୍ସଲପନ୍ଥୀ ଆନ୍ଦୋଳନର ଉଗ୍ରତା କମିଆସିଥିବାରୁ ତା ହାତରେ ଅଛି ପ୍ରଚୁର ସମୟ । ସନ୍ଧ୍ୟାରେ କ୍ଲବ୍‌କୁ ଯାଇ ଅର୍ଦ୍ଧମାତାଲ ଅବସ୍ଥାରେ ଘରକୁ ଫେରିବାର ସୁଯୋଗ ମଧ୍ୟ ତାର କମିଯାଇଛି ।

ବଣ ପାହାଡ଼ ଘେରା କୋରାପୁଟ ସହର । ଯଦିଓ ଆଗେ ଅସ୍ୱାସ୍ଥ୍ୟକର ଥିଲା, ବର୍ତ୍ତମାନ କିନ୍ତୁ ସେ ଜଳବାୟୁ ଆଉ ନାହିଁ । ଲଣ୍ଡନ ସହରରେ ଯେମିତି କେଉଁଠି କିଛି ନଥାଏ, ହଠାତ୍ ବର୍ଷା ହୋଇଯାଏ, କୋରାପୁଟ ସହରର ଅବସ୍ଥା ଠିକ୍ ସେମିତି । ବ୍ରିଟିଶ ଅମଳର ମାଳ ଅଞ୍ଚଳରେ ଏଇ ଘୁମନ୍ତ ସହର କ୍ରମଶଃ ମୁଖର ହୋଇ ଉଠୁଛି । ନୂଆ ନୂଆ କୋଠାବାଡ଼ିରେ ପରିପୁଷ୍ଟ ହେଉଛି ତାର ଅଙ୍ଗ । ଜନଜୀବନ ମଧ୍ୟ ନୂତନ ସଭ୍ୟତାର ସ୍ପର୍ଶରେ ଆଲୋକିତ ହେଉଛି ।

ଏଇ ନିସ୍ତବ୍ଧ ସହରର ପରିବେଶଟା କେତକୀକୁ ବେଶ୍ ଭଲଲାଗୁଥିଲା । ଗ୍ରାମ୍ୟଜୀବନର ଶାନ୍ତି ଓ ସହର ଜୀବନର ସମସ୍ତ ସୁବିଧା ସୁଯୋଗର ସମନ୍ୱୟ ଘଟିଛି ଏଠି ।

ପାହାଡ ତଳେ ସେମାନଙ୍କ ବସା । ପାହାଡ଼ର ମେଖଳାରେ ମେଘ ଚରିଗଲେ ଘର ଭିତରେ ମଧ୍ୟ ସେଇ ମେଘର ସ୍ପର୍ଶ ମିଳେ । ଚମତ୍କାର ଅନୁଭୂତି । ନିଜ ସଂସାରରେ ନିଜେ ମାଲିକ । ସ୍ୱାଧୀନ ସଂସାରର ସ୍ୱାଦ ହିଁ ଅଲଗା ।

ବାଲ୍ୟକାଳ ପରେ କେତକୀର ଆରମ୍ଭ ହେଲା ନୂତନ ଜୀବନ । ବେଳେବେଳେ ଦିଜଣ ସାଙ୍ଗସାଥୀଙ୍କ ଘରକୁ ବୁଲିବାକୁ ଯାଆନ୍ତି । ଛୋଟ ସହରରେ ସେମାନଙ୍କ ସଂଖ୍ୟା ମଧ୍ୟ ଖୁବ୍ ବେଶି ନୁହେଁ । ଅନ୍ୟ କିଛି ଆକର୍ଷଣ ନାହିଁ । ତେଣୁ ଅଧିକାଂଶ ସମୟ ପାରିବାରିକ ଜୀବନର ମଧୁପାନ କରୁ କରୁ କଟିଯାଏ ।

ବିବାହ ସମୟରେ ଆନନ୍ଦକୁ ଯାହା ଥିବାର ଦେଖାଯାଉଥିଲା, ବର୍ତ୍ତମାନ ତାର ରୂପ ଭିନ୍ନ । କଥାର ସେଇ ରୁକ୍ଷତା ଏବେ ତ ନାହିଁ; କେତକୀ ନିକଟରେ ସେ ଯେମିତି ପୋଲିସ ଚରିତ ଦବେଇ କୋମଳତାର ମୂର୍ତ୍ତିରେ ବିରାଜମାନ । ଅନ୍ୟଙ୍କୁ ଶାସନ କରିବାର ମନୋବୃତ୍ତିଟା ଘରବାହାରେ ଭିତରକୁ ଆସିବାପରେ ଯେମିତି ବାହାରେ ହିଁ ରହିଯାଉଛି ।

କୋରାପୁଟ । ଭାରତବର୍ଷର ଦ୍ୱିତୀୟ କାଶ୍ମୀର । ଚତୁର୍ଦ୍ଦିଗରେ ପ୍ରାକୃତିକ ସୌନ୍ଦର୍ଯ୍ୟ । ଆନନ୍ଦ କେତକୀକୁ ନେଇ ସେ ଦିନ ଜଳପ୍ରପାତ ଦେଖାଇବାକୁ ଯାଇଥିଲା । ପାହାଡ଼ର ତୁଙ୍ଗ ଶିଖରରୁ ଭୀମଭୈରବ ରବରେ ତଳକୁ ଲମ୍ଫ ଦେଉଥିବା ଜଳପ୍ରପାତର ରୁଦ୍ର ସୁନ୍ଦର ରୂପ ଦେଖି କେତକୀ ଶିହରି ଉଠିଥିଲା । ଆନନ୍ଦକୁ ଦୁଇ ହାତରେ ଛନ୍ଦି କହିଥିଲା—ଭାରି ଭୟ ଲାଗୁଚି । ମୁଣ୍ଡ ଘୂରେଇ ଦେଉଛି ।

ଗର୍ଭରେ ସନ୍ତାନ ଧାରଣ କରିଥିବା ନାରୀ ସ୍ୱଭାବତଃ ଦୁର୍ବଳ । ନିଜପାଇଁ ଯେତେ ନୁହେଁ ଅନାଗତ ପାଇଁ ଚିନ୍ତା ଅଧିକ ।

ଆନନ୍ଦ କହିଥିଲା—ତା'ହେଲେ ଫେରିବା ।

—ହଁ । କି ଶବ୍ଦ ! ମୋ ଦେହ ଥରୁଚି । ଚାଲ ।

ଆଉଦିନେ ସେମାନେ ଯାଇଥିଲେ ଜୟପୁର ସହର । ଆଉଦିନେ ସୁନାବେଡ଼ା, ଆଉଦିନେ ବାଲିମେଲା । ସହରର ଆକର୍ଷଣଠାରୁ ଖାଲଢିପ ରାସ୍ତାରେ ଜୀପ୍‌ର ସାମନା ସିଟ୍‌ରେ ପାଖାପାଖି ବସି ଯିବାର ଆନନ୍ଦଟା ଥିଲା ବେଶି । ଜୀପ୍‌ର ଗତିରେ କେତେବେଳେ ଆନନ୍ଦ କେତକୀ ଉପରକୁ ଢଳିପଡ଼ୁଛି ତ ଆଉ କେତେବେଳେ କେତକୀ ଆନନ୍ଦ ଉପରକୁ ଢଳିପଡ଼ୁଛି । ବାହାରର ଆଦ୍ୟକାଳୀନ ଦୃଶ୍ୟ କେଉଁ ଦମ୍ପତିର ଚକ୍ଷୁଯୁଗଳକୁ ମରୁଆଳି କରି ନଥାଏ ! ଆଉଥରେ କେତକୀ ଚମକି ପଡ଼ିଥିଲା ମିଗ୍‌କାରଖାନାରେ ମିଗ୍‌ଇଞ୍ଜିନର କାନଫଟା ଶବ୍ଦ ଶୁଣି । ଗର୍ଭବତୀ ନାରୀ ପାଖରେ ଶବ୍ଦହିଁ ବିପଦ । ସେ ତ ଫେରିଆସି ଅସୁସ୍ଥ ହୋଇପଡ଼ିଥିଲା । ଡାକ୍ତର କହିଲେ— ଆନନ୍ଦବାବୁ, ତାଙ୍କୁ ଏସବୁ ଜାଗାକୁ ଆଉ ନେବେନି । ଶକ୍ ଲାଗିଲେ ଅମଙ୍ଗଳ ଘଟିପାରେ ।

ଅଭିଜ୍ଞତାବଶତଃ ନବଦମ୍ପତି ସେଇଦିନଠାରୁ ଦୂରକୁ ବୁଲିଯିବା ବନ୍ଦ କରିଦେଲେ । ସନ୍ଧ୍ୟାରେ ସେଇ ବସା ଘରପାଖରେ ବୁଲାବୁଲି କରିବା—ବଜାର ଯିବା ଛଡ଼ା ଅନ୍ୟ ସବୁ ପ୍ରୋଗ୍ରାମ୍ ବନ୍ଦ । ପାର୍କର ବୁଲାଟା ବି ବନ୍ଦ ହୋଇଗଲା ଯେତେବେଳେ ଉମାଶଶୀ ଆସି ପହଞ୍ଚିଲେ ।

ଏଥର ଆଉ ଉମାଶଶୀ ନୀଳକଣ୍ଠଙ୍କ ଦୋଷଗାନ କରିବାରେ ପଞ୍ଚମୁଖ ହୋଇ ଉଠୁନାହାନ୍ତି । କେତକୀ ପ୍ରତି ତାଙ୍କ କଥାଭାଷାର ଢଙ୍ଗ ବଦଳିଯାଇଛି । ରନ୍ଧାବଢ଼ା କରିବାର ଦାୟିତ୍ୱ ନିଜେ ନେଇଛନ୍ତି । ସବୁ ଭଲରେ ହିଁ ଚାଲିଥିଲା; କିନ୍ତୁ ସେଦିନ ହଠାତ୍ ଅଘଟନଟି ଏଡ଼ ସୃଷ୍ଟି ହେଲା । ଶାଶୁଙ୍କର ସଦୟ ବ୍ୟବହାରରେ କେତକୀ ତାଙ୍କ ସାମନାରେ କଥାବାର୍ତ୍ତା କରିବାର ହୃତସାହସ ଟିକକ ପୁଣି ଫେରିପାଇଥିଲା । ସେଦିନ ଆନନ୍ଦ ଡ୍ୟୁଟିରେ ବାହାରକୁ ଯାଇଥିବା ବେଳେ ଉମାଶଶୀ ବୋହୂକୁ ପଚାରୁଥିଲେ —ହଁ ଲୋ ବୋହୂ, ତୁ ଆସିବା ପରେ କ'ଣ କ'ଣ ସବୁ ଦେଖିବାକୁ ଗଲୁଣି ? ଜଳ-ପ୍ରପାତ ଦେଖିଲୁଣି ନା ? ଏଠି ଭଲ ଭଲ ଜିନିଷ କ'ଣ ମିଳେ ?

କେତକୀ ଏଠାକୁ ଆସିବାପରର ଅଭିଜ୍ଞତାଗୁଡ଼ାକ ଠିକେ ଠିକେ କହିଗଲା । ଶେଷରେ କହିଲା—ଜିପ୍‌ରେ ଯିବା ଭାରି କଷ୍ଟ ମା' । ଆମର କାର୍ କିଣା ହେଉ, ବୁଲିବା ଯେ କିଛି କଷ୍ଟ ହେବନି ! ଦଣ୍ଡକାରଣ୍ୟ ଯିବାକୁ ଭାରି ଇଚ୍ଛା ଅଛି । ସେଠି କୁଆଡ଼େ ଖୁବ୍ ଭଲ ଭଲ ମିଠେଇ ମିଳେ । କଲିକତାରେ ଯୋଉ ମିଠେଇ ମିଳେ; ଦଣ୍ଡକାରଣ୍ୟରେ ଅବିକଳ ସେ ସବୁ ମିଳେ । ହେଲେ ବହୁତ ବାଟ । ଜିପ୍‌ରେ ଯିବାକୁ ତମ ପୁଅ ମନାକରୁଛନ୍ତି । ସେଦିନ କହୁଥିଲେ କାର୍ କିଣା ହେବା ପରେ ଯିବା ।

ହଠାତ୍ ଉମାଶଶୀଙ୍କର ମୁହଁଟା କଠିଣ ହୋଇଆସିଲା । ହଠାତ୍ ପୋଷା ବାଘୁଣୀ ଯେମିତି ବଣ-ବାଘୁଣୀରେ ପରିଣତ ହେଇଗଲେ । ଗର୍ଜି ଉଠି କହିଲେ-- ଆନନ୍ଦ କଣ କହୁଥିଲା ? କାର୍ କିଣାହେଲେ ଦଣ୍ଡକାରଣ୍ୟ ଯିବ ? ଆନନ୍ଦ ତ ସେମିତିକା ପିଲା ନୁହେଁ । ପୋଡ଼ାମୁହାଁ କାର୍ କିଣିବା କଥା ତୁଇ ତା ମୁଣ୍ଡରେ ଭର୍ତ୍ତି-କରିଚୁ । ହଉ, ସେ ଆସୁ ତାକୁ କହିଦବି—ମାଇପକୁ ନେଇ କାର୍‌ରେ ବୁଲିବା ଆଗରୁ ତା ପଢ଼ିବା ପାଇଁ ଯେତେ ଟଙ୍କା ଆମେ ଖର୍ଚ୍ଚ କରିଚୁ କଡ଼ାକ୍ରାନ୍ତି କରି ସବୁ ଆମକୁ ଫେରେଇଦବ । ପାଠ ପଢ଼େଇ ବଡ଼ ଭୁଲକରି କରେଇଦେଲୁ । କୋଉ ଆମକୁ ସେ ପୋଷିବ ! ହଁ ଲୋ, ଘରଭଙ୍ଗେଇ, ଏଠାକୁ ଆସୁ ଆସୁ ପୁଅଟାର ମୁଣ୍ଡଟାକୁ ବିଗାଡ଼ିଦେଲୁ । ହାରମଙ୍ଗାଣୀ, ଦୁଧଗୁଡ଼ ଦେଇ ଘରେ ନାଗସାପ ମୁଁ ପୋଷୁଛି ।

କେତକୀ ଶୁଣି ଅବାକ୍ ! କ'ଣ ତାର ଭୁଲ୍ ! କାର୍‌ପାଇଁ ବାପା ପଚିଶ ହଜାର ଟଙ୍କା ଦେଇଗଲେ । କାର ନ କିଣାଯିବା କଥା ଯଦି ସେତେବେଳେ ଏ ଭଳିଆ ପରିସ୍ଥିତି ଏମାନେ ସୃଷ୍ଟି କରୁଥିଲେ କାହିଁକି ? ବାପାଙ୍କ ସହିତ ଶ୍ୱେର ଚଣ୍ଡାଳ ଭଳି ବ୍ୟବହାର କରୁଥିଲେ କାହିଁକି ? ପାଟିତୁଣ୍ଡ ପରେ କେତକୀର ମାନସିକ ଦୁଶ୍ଚିନ୍ତା ବଢ଼ିଗଲା । ସେ ପୁଣି ଶଯ୍ୟାଶାୟିନୀ ହେଲା ।

ସନ୍ଧ୍ୟା ପରେ ଆନନ୍ଦ ଫେରି ଘର ଭିତରର ଅସ୍ୱାଭାବିକ ବାୟୁମଣ୍ଡଳର ସ୍ପର୍ଶ ପାଇଗଲା । କେତକୀ ଅନ୍ଧାର ଘରେ ଶୋଇଛି । ବେଡ୍ ଲେମ୍ପ ବି ଜାଳିନାହିଁ । ଆଉ ମା' ମୁହଁ ଭାରିକରି ବସିରହିଛନ୍ତି, ପଦେ କଥା ବି କହୁ ନାହାନ୍ତି । ସେ କାହାରିକୁ କିଛି ନ କହି ଚୁପକରି ଫିଲଟି ହାତରୁ ପାଣି ଗ୍ଲାସେ ପିଇ ପୁଣି କୁଆଡ଼େ ଚାଲିଗଲା । ସେ ଗଲା ପରେ ଉମାଶଶୀଙ୍କର ଉଗ୍ର ମୂର୍ତ୍ତି ଆହୁରି ଉଗ୍ରତର ହୋଇଉଠିଲା । କେତକୀ ଶୋଇଥିବା ଘରର ଦରଜା ପାଖକୁ ଯାଇ ସେ ପାଟିକଲେ—ହଇଲୋ, ଏତେ ତ ଘଇତାସୁହାଗୀ ଦେଖେଇ ହଉଥିଲୁ, ଘଇତାକୁ ନେଇ କାର୍‌ରେ ବୁଲିବୁ, ସାଇବ ପାଖରେ ମେମ ସାଇବ ହବୁ, ଘଇତା ଅଫିସ୍‌ରେ ଖଟି ଖଟି ଆସିଲା ସେ ଟିକିଏ ଚା' ଜଳଖିଆ ଦେଇପାରିଲୁନି ! ପୁଅଟା ଢକଢକକରି ପାଣି ପିଇ ପୁଣି ବାହାରିଗଲା ।

ସେ ପୋଡ଼ାମୁହିଁ ସଇତା ବି ଟ୍ୟ' କପେ କରି ନଦେଇ ପାଣି ଗିଲାସେ ବଢ଼େଇଦେଲା । ମତେ ଏଠିକି ପୋଇଲା କରି ଆଣିଛ ! ମୁଁ ସବୁ କରିଦେବି, ଆଉ ତୁ ମହାରାଣୀ ହେଇ ପଲଙ୍କରୁ ତଳକୁ ଓହ୍ଲେଇବୁନି ?

କେତକୀ ନଦା ଯାଇନଥିଲା । ସନ୍ଧ୍ୟାପହରଟା କ'ଣ ନଦା ଯିବାର ସମୟ । ବାବୁ ଆସିଥିଲେ ପୁଣି ଚାଲିଗଲେ—ଏହା ଶୁଣିବା ମାତ୍ରେ ସେ ଉଠି ବାହାରକୁ ଆସିଲା । ସଇତାକୁ ଯାଇ କହିଲା—ବାବୁ ଆସି ଚାଲିଗଲେ, ଟ୍ୟ' କରି ଦେଇ ପାରିଲୁନି ?

ସଇତା କହିଲା—ସେ ତ ଆସି ପାଣି ଗ୍ଲାସେ ପିଇ ଯାଙ୍ଗେ ଯାଙ୍ଗେ ଚାଲିଗଲେ—ରହିଥିଲେ ସିନା ଟ୍ୟ' କରି ଦେଇଥାନ୍ତି ।

ଉମାରାଣୀ ବୁଲିପଡ଼ିଲେ—ଗୁଜୁରିଟା ସାଙ୍ଗରେ କ'ଣ ଜବାବ ସୁଆଲ କରୁଚୁ । ମୋ ଆଗକୁ ଆ । ପୁଅ ବାହାକରେଇ ବୋହୂ ଆଣିଥିଲି, ବୋହୂ ଶୋଇବେ ରାଜରାଣୀ ହୋଇ, ଆଉ ପୁଅକୁ ଚାହା କରି ଦବ ସଇତା ଯାନ୍ତାଳ ! ତୁମ ଏ ଘରେ ମୁଁ ଆଉ ପାଣି ଛୁଇଁବିନାହିଁ । ଆଜି ସେ ଟୋକା ଆସୁ, କାଲି ସକାଳୁ ବସ୍‌ରେ ମୁଁ ଘର ଟିକେଟ କାଟି ନ ଯାଇଚୁ, ମୁଁ ହରିଆ-ମାଇପ ନୁହେଁ । ବୁଝିବୁ ଅଧିଆ, ମୋ ଝୁଆ ନୁହେଁ, ବେଧିଝୁଆ ।

ଉଃ ! କି ଭଲ ଏ ଶାଶୁ ! କେତକୀର ଏ ଅବସ୍ଥାରେ ବି ତାଙ୍କର ଦୟାମାୟା କିଛି ନାହିଁ !

କେତକୀ ଆଖିରୁ ଲୁହ ଝରିଆସିଲା ।

ଉମାରାଣୀ ସଇତାକୁ କହିଲେ—ହଇରେ ଟୋକା, ବସିଟା ଖେଉର ପାଞ୍ଚଟା ବେଳେ ନା ! ଆଜିଲୁ ମୋ ଜିନିଷପତ୍ର ସବୁ ସଜାଡ଼ିଦେ । ମୋର ଏବେ ହୋଇଗଲା । ମୋତେ ଯା' ମରଣ ହେଲାନି—ଏତେ ବାଟ ଦଉଡ଼ି ଆସିଥିଲି ପୁଅବୋହୂଙ୍କ ଆଦର ପାଇବ । ଏଇ ଆମ କୁଳ ରକ୍ଷା କରିବେ ! ବଉଁଶ ମୁହଁରେ ଆଲୁଅ ଜାଳିବେ ! ପୋଡ଼ଯାଉ ବଉଁଶ, ଏ ଟୋକାଟାର ଏଡ଼େ ଗବ !

ରାତି ନ...ଦଶ...ଏଗାର ।

ଭଗବାନ୍ ମନ ନେଇ ଆନନ୍ଦ କ୍ଲବ୍‌ର ଗୋଟିଏ କୋଣରେ ବସି ରହିଚ । ସମ୍ଭବତଃ କିଛି ପାନୀୟର ସଦ୍‌ବ୍ୟବହାର ମଧ୍ୟ କରିଚ୍ଛି । ଭାବୁଚ୍ଛି—ମା ଏଠିକି ନ ଆସିଥିଲେ କ'ଣ ଚଳି ନଥାନ୍ତା ? ସେମାନେ ତ ବେଶ୍ ଥିଲେ । ଏଠିକା ଡାକ୍ତର-ଖାନାରେ ଡାକ୍ତର ନର୍ସ ତ ଭରପୂର ହୋଇ ରହିଛନ୍ତି—ଅସୁବିଧା କଣ ହୋଇଥାନ୍ତା !

ପୁଣି ପର ମୂହୂର୍ତ୍ତରେ ଭାବନା—ସେ ଅଫିସ ଗଲେ ବା ଟୁର୍‌ରେ ଗଲେ କେତକୀ ଏକା ଏକା ଭାରି ଅସହାୟ ଅନୁଭବ କରେ । ହଠାତ୍ କିଛି ହେଲେ ଘରେ କିଏ ବା ଅଛି ? ତେଣୁ ମା'ଙ୍କୁ ଆଣିବା କଥା ଉଠିଥିଲା । ଆଉ କେତକୀ ତ ମା'ଙ୍କ ଆସିବା ପାଇଁ ବେଶି ଆଗ୍ରହ ଦେଖାଇଥିଲା । ହଠାତ୍ ଆଜି ପୁଣି କ'ଣ ହେଲା ? ନୋହିଲେ ସେ ଘରେ ପହଞ୍ଚିବା ପରେ ବି କେହି ତା ସାଙ୍ଗରେ କଥା କହିଲେ ନାହିଁ । ମା' ତ ସେଇଠି ବସିଥିଲେ, କେତକୀ ତ ଘର ଭିତରେ ଶୋଇଥିଲା !

ତାର ଭାବନାର ଅଳକୂଳ ନାହିଁ । ଟେବୁଲ୍ ଉପରେ ମୁଣ୍ଡ ଗୁଞ୍ଜି ସେ ବସିଛି । କ୍ଲବ୍ ଶୁନ୍‌ଶାନ୍ ହବାକୁ ବସିଲାଣି । ଚୌକିଦାର ଆସି କହିଲା—ସାର୍, ଏଗାରଟା ବାଜିଲାଣି । ବସାକୁ କ'ଣ ଫେରିବେନି ?

ଆନନ୍ଦ ହାତଘଣ୍ଡିକୁ ଦେଖିଲା । ସତକୁ ସତ ଏଗାର ପାର ହେଇଗଲାଣି । ବଜାର ବନ୍ଦ ହେଇଯିବଣି, ରାସ୍ତାଘାଟ ଶୁନ୍‌ଶାନ୍ ହେଇଯିବଣି । ତାକୁ ଉଠିବାକୁ ପଡ଼ିବ । ସେତେବେଳକୁ ପୋଲିସ୍ ଡ୍ରାଇଭରଟା ବି ଆସି ପାଖରେ ଠିଆ ହେଇଗଲାଣି । ସେ ଉଠିପଡ଼ିଲା । ଗୁଲିବାର ଭରସାମ୍ୟ ନାହିଁ । ସେ ଯାଇ ଜୀପ୍‌ରେ ବସିପଡ଼ିବାକ୍ଷଣି ଚୌକିଦାର ଦଉଡ଼ି ଦଉଡ଼ି ଆସି କହିଲା—ସାର୍, ଏସ୍. ପି. ସାହେବ ଫୋନ୍ କରିଛନ୍ତି ।

ଜୀପରୁ ଓହ୍ଲାଇ ଆନନ୍ଦ ପୁଣି ଫୋନ୍ ପାଖକୁ ଆସିଲା । ଏସ୍. ପି. କହିଲେ, କାଲି ପ୍ରତ୍ୟୁଷରୁ ସେ ନିକଟରେ ଘଟିଯାଇଥିବା ମର୍ଡ଼ର କେସ୍‌ର ଇନ୍‌କ୍ୱାରିପାଇଁ ଯିବେ । ସାଙ୍ଗରେ ଆନନ୍ଦ ଯିବ ।

ଚାକିରିର ଦାୟିତ୍ୱ । ଉପର ହାକିମଙ୍କ ଆଦେଶ । ଆନନ୍ଦ ଭାରି ଅସୁସ୍ଥ ଅନୁଭବ କରୁଥିଲା । ସେ ଫେରିବାବେଳକୁ ମା ଶୋଇଗଲେଣି । କେତକୀ ଚୁପ୍ ବସି ରହିଛି । ମୁହଁ ସେମିତ ଗମ୍ଭୀର ।

ଆନନ୍ଦ ଘରଭିତରକୁ ଯାଇ ପୋଷାକ ପରିବର୍ତ୍ତନ କରି ବାଥ୍‌ରୁମ୍ କାମ ସାରି ଖାଇବା ଟେବୁଲ ପାଖକୁ ଗଲା । ରୋଷେଇଘର ଭିତରେ କେତକୀ ବଢ଼ାବଢ଼ିର ଝୁଣ୍ଟଖାଡ଼୍, ଆରମ୍ଭ କରିଦେଇଛି । ବଢ଼ାବଢ଼ି ପରେ ସେ ଆସି ଖାଇବା ଟେବୁଲ ପାଖରେ ଠିଆହେଲା । ଖାଇବା ଆଗରୁ କିଛି କହି ସେ ସ୍ୱାମୀଙ୍କ ମନକୁ ଭାରାକ୍ରାନ୍ତ କରିବାକୁ ଚାହେଁନା ।

ଆନନ୍ଦ ହିଁ କହିଲା—ଖାଇବାକୁ ଆଣ । ଭାରି ଭୋକ ।

ଖାଦ୍ୟ ପରିବେଷଣ ହୋଇଯିବା ପରେ ଆନନ୍ଦ ପଚାରିଲା—ତମର ଖାଇବା ନାହିଁ ?

କେତକୀ କହିଲା—ନା, ତୁମେ ଆଗ ଖାଇସାର ।

ଆନନ୍ଦ କେତକୀର ମୁହଁକୁ ଚାହିଁରହିଲା କିଛି ସମୟ । କେତକୀ କହିଲା—ମୋତେ କଣ ନୂଆ ଦେଖୁଚ ? ବାରଟା ବାଜିଲାଣି, ଖାଇ ନିଅ । ମୁଁ ପରେ ଖାଇବି ।

ଆନନ୍ଦ କହିଲା—ଆଜି ପୁଣି କଣ ହେଲା ? ମା ଖାଇଛି ନା ?

କେତକୀ ନୀରବ ରହିଲା ।

ଆନନ୍ଦ ପୁଣି କହିଲା—କହୁନ କାହିଁକି ?

କେତକୀ କହିଲା—ଖାଇସାର ଆଗ—କହିବି ନା !

ଆନନ୍ଦ ହଠାତ୍ ଖାଇବା ଟେବୁଲରୁ ଉଠିପଡ଼ୁଥିଲା । କେତକୀ ତା ହାତ ଧରି ବସେଇଦେଲା—ଖାଇବ ନା ନାହିଁ ? ବସିଲ...

କେତକୀ ନିଜ ହାତରେ ଆନନ୍ଦକୁ ଖୁଆଇଦେଲା । ଆନନ୍ଦ ମଧ୍ୟ କେତକୀର ହାତକୁ ଜବରଦସ୍ତ ତା ପାଟି ପାଖକୁ ନେଇ କହିଲା—ତୁମେ ବି ଖାଅ । ତୁମର ଏ ଅବସ୍ଥାରେ ତୁମେ ଖାଲିପେଟରେ ରହିବା ଉଚିତ ନୁହେଁ ବୋଲି ଡାକ୍ତର କହିଥିଲେ ନା ! ତୁମେ ନ ଖାଇଲେ ସେ ଖାଇବ କେମିତି ?

ସତ ତ ! ଗର୍ଭସ୍ଥ ସନ୍ତାନ ତ ମା'ର ଖାଦ୍ୟ ଉପରେ ହିଁ ନିର୍ଭର କରେ । ମା' ନ ଖାଇଲେ ତା'ର ବି ଉପବାସ । ମା' ସିନା ଦିନେ ଓଳିଏ ଉପବାସକୁ ସହିଯାଇ ପାରିବ, ହେଲେ ସେ...

କେତକୀ ମଧ୍ୟ ଖାଇଲା ।

ଆନନ୍ଦ କହିଲା—ମା'ର ପ୍ରକୃତି ତ ସବୁଦିନେ ଏଇଆ । ସେ ଏଠି ଯେତେ ଦିନ ରହୁଚି ତୁମେ ତାକୁ ଟିକିଏ ସମ୍ଭାଳିନିଅ ।

କେତକୀ କହିଲା—ସମ୍ଭାଳିବି କେମିତି ! ସେ ତ ଆଜି ସାଫ ସାଫ କହି ଦେଇଛନ୍ତି ସଇତା ହାତରୁ ଖାଇବେନାହିଁ । ମୁଁ ଜାଣି ଜାଣି ସେ ଆସିବା ପରେ ସଇତାକୁ ରୋଷେଇଘରକୁ ପଶିଦେଇ ନ ଥିଲି । ସବୁ ରନ୍ଧାରନ୍ଧି କରୁଥିଲେ । ମା' ତ ଆଜି ଅଯଥା ଝଗଡ଼ା କରି ରୋଷେଇଘରକୁ ଗଲେନି । ଚୁଲି ପାଖକୁ ଯିବାକୁ ତମେ ତ ମତେ ମନା କରିଚ । ସଇତା ନ ରାନ୍ଧିଲେ ତମେ କଣ ଉପାସ ରହିବ ?

ଆନନ୍ଦ କହିଲା—ମା ବୁଢ଼ୀଲୋକ, ଉପାସରେ ଶୋଇବ । ତାକୁ ଡାକିବା... ?

କେତକୀ କହିଲା—ସେ ଘର ଭିତରୁ କବାଟ କିଳି ଶୋଇଛନ୍ତି । ସଇତାକୁ ଡାକି ତାଙ୍କ ଜିନିଷପତ୍ର ସଜାଡ଼ି ରଖିଚନ୍ତି । ମୋତେ ଶୁଣେଇ ଶୁଣେଇ କହୁଚନ୍ତି, କାଲି ଭୋର୍ ବସ୍‌ରେ ଚାଲିଯିବେ ।

—ଚାଲିଯିବ ? କିଆଁଡ଼େ ଚାଲିଯିବ ? ଏସ୍. ପି.ଙ୍କ ସାଙ୍ଗରେ ମୋତେ କାଲି ଭୋର୍ ଭୋର୍ ବାହାରି ଯିବାକୁ ପଡ଼ିବ ଟୁର୍‌ରେ । ଫେରୁ ଫେରୁ କେତେବେଳ ହେବ କିଏ ଜାଣେ ?

—ନା ନା, ତୁମେ କାଲି ରୁହ । ତୁମେ ଚାଲିଗଲେ ଏଠି ପୁଣି ଯୋଉ ପରିସ୍ଥିତି ହବ, ମୁଁ ସମ୍ଭାଳି ପାରିବିନି ।

ଆନନ୍ଦ କହିଲା—ଖୋଦ୍ ଏସ୍. ପି. ମତେ ଫୋନ୍‌ରେ କହିଛନ୍ତି । ମୁଁ ବି ଯିବାକୁ ରାଜି ହେଇଛି । ଆଗରୁ ଜାଣିଥିଲେ ଘରେ ଅସୁବିଧା ଅଛି କହି ରହି ଯାଇଥାନ୍ତି । ସେ ତ ଜାଣିଛନ୍ତି ତୁମ ଅବସ୍ଥା, ହୁଏତ କିଛି କହିନଥାନ୍ତେ । କିନ୍ତୁ 'ହଁ' କହି ଉପରି ହାକିମଙ୍କ ସହିତ ନ ଯିବାଟା ତାଙ୍କୁ ବେଖାତିର କରିବା ।

ଆନନ୍ଦର ଅନୁପସ୍ଥିତିରେ କାଲି ଏ ଘରେ ଯେଉଁ ଭୟାବହ କାଣ୍ଡ ଘଟିବ ତାହା ଭାବି କେତକୀ ଅନ୍ତର୍ମାନସରେ ଶଙ୍କିତ ହେଇଉଠୁଥିଲା ।

ପରଦିନ କିନ୍ତୁ କୌଣସି ଅସ୍ୱାଭାବିକ ଘଟଣା ଘଟିଲାନାହିଁ । ଅତି ଭୋର୍‌ରୁ ଆନନ୍ଦ ଚାଲିଗଲା । ମା'ଙ୍କ ଘରର ଦରଜା ଖୋଲିବାବେଳକୁ ସକାଳ ହେଇ-ଯାଇଥିଲା । ଚୁପ୍‌କିନା ସଇତାକୁ ଡାକି ଆନନ୍ଦର ଅନୁପସ୍ଥିତି କଥା ଶୁଣି ସ୍ନାନାଦି ଶେଷକରି ସେ ସିଧା ଗୋସାଇଘର ଭିତରକୁ ଯାଇ ଚଣ୍ଡୀବନ୍ଦାରେ ଲାଗିଲେ । ବନ୍ଧା ବନ୍ଧ ହେଇଥିବା ଝରକାପଟ ପୁଣି ଖୋଲାଖୋଲି ହେଲା ।

ଘର ଭିତରେ ଶାଶୂ ବୋହୂ ଦୁଇଜଣ, ଯେ ଯାହାର କାମ କରୁଛନ୍ତି । କେହି କାହା ସହିତ କଥାବାର୍ତ୍ତା କରୁନାହାନ୍ତି । ପାରିବାରିକ ଜୀବନରେ ଏପରି ପ୍ରାୟ ଘଟିଥାଏ । ଖାଇବା ସମୟରେ ଯେ ଯାହାର ଖାଦ୍ୟ ଆଣି ଖାଇଲେ । ଶୋଇଲେ । ଶୋଇସାରି ପୁଣି ବାହାରକୁ ଆସିଲେ । ଶାଶୂ ପୁଣି ରାତିପାଇଁ ରାନ୍ଧିଲେ ।

ସନ୍ଧ୍ୟା ପରେ ପରେ ଆନନ୍ଦ ଫେରିଆସିଲା । ଘରର ସ୍ୱାଭାବିକ ଅବସ୍ଥା ଫେରି-ଆସିଛି । ଶାନ୍ତିରେ ନିଃଶ୍ୱାସମାରି ବୈଠକଖାନାରେ ବସି ଖବରକାଗଜ ପଢ଼ିଲା ।

ରନ୍ଧା ଶେଷ କରି ଉମାଶଣୀ ଡାକି ପକାଇଲେ—ଆନନ୍ଦପାଇଁ ଜାଗା କରି ବୋହୂ ! ମୁଁ ଭାତ ବାଢ଼ି ଦଉଛି ।

ଦିନ ଓଳି ଗୁଡ଼ାଏ ଖିଆଯାଇଥିଲା । ଏଯାଏ ଉଦରକୁ କ୍ଷୁଧା ଆସି ନ ଥିଲା । ନଅଟା ପରେ ଖାଇବି ବୋଲି ଆନନ୍ଦ ଭାବିଥିଲା । କିନ୍ତୁ ପରିସ୍ଥିତି ଯାହା ବିଳମ୍ବ କଲେ ମା ପୁଣି ଅନ୍ୟରୂପ ଧରିପାରନ୍ତି । ତା'ପରେ ଟୁର୍‌ର କ୍ଳାନ୍ତି ଦେହରୁ ସମ୍ପୂର୍ଣ୍ଣ ଯାଇ ନଥିଲା । ସେ କେବଳ ଶୀଘ୍ର ଖାଇବା କାମଟା ସାରି ବିଛଣା ଧରିନେଲେ ରକ୍ଷା । ଆନନ୍ଦକୁ ଖାଇବାକୁ ଦେଇ କେତକୀପାଇଁ ମଧ୍ୟ ବାଢ଼ିଦେଲେ । ଯଦିଓ ଦୁଇଜଣ

ସାଙ୍ଗରେ ଖାଆନ୍ତି କିନ୍ତୁ ମା ଆସିବାଠୁ ପରସ୍ପର ଅଲଗା ଖାଉଛନ୍ତି । ଆନନ୍ଦର ଖାଦ୍ୟ ଟେବୁଲ ଉପରେ ଆଉ କେତକୀର ଖାଦ୍ୟ ସ୍ତୋଭେଇଘର ପିଣ୍ଡାରେ ।

ଆନନ୍ଦ କହିଲା—ଯାଅ, ଖାଇନିଅ ।

କେତକୀ ଖାଇବସିଲା ।

ଘରଟା ନିସ୍ତବ୍ଧ । ସମସ୍ତେ ଚୁପ୍ ଚାପ୍ ।

ପୁଅ ବୋହୂ ଖାଇସାରିବାପରେ ଉମାଶଶୀ ଆଉ ସଇତା ଖାଇ ବସିଲେ ।

ଆନନ୍ଦ ଖାଇସାରି ବହିଟା ଧରିଲା । କେତକୀ ଅପେକ୍ଷାକଲା ଶାଶୁଙ୍କ ଘର କବାଟ ବନ୍ଦ ହେବା ପର୍ଯ୍ୟନ୍ତ । ସେ ବୈଠକଖାନାରେ ବସି ମେଗାଜିନ୍ ଓଲଟାଉ ଥିଲା ।

ଶାନ୍ତ ରାତି । ବେଡ୍ ଲେମ୍ପର ନୀଳ ଆଲୋକରେ ସବୁ ଯେମିତି ସ୍ୱପ୍ନିଳ । ଆନନ୍ଦର ଛାତି ଉପରେ ମୁଣ୍ଡରଖି କେତକୀ କାନ୍ଦଉଠିଲା । ଆନନ୍ଦ ଆଉ ପୁରୁଣା କଥା ଉଠାଇବାକୁ ଚାହୁଁ ନଥିଲା । କ'ଣ ଲାଭ ? ସେ କେତକୀର ମୁହଁଟିକୁ ଚୁମ୍ବନରେ ପ୍ରେମସିକ୍ତ କଲା । ତାର ମନଟା ଆଜି ଖୁବ ଭଲଥାଏ । ମର୍ଡ଼ର କେସ୍ ଇନକ୍ୱାରରେ ତାର କୃତିତ୍ୱ ଦେଖି ଏସ୍. ପି. ଆଜି ଖୁବ ସନ୍ତୁଷ୍ଟ ହୋଇଥିଲେ । ଆସିବାବେଳେ ବାଟରେ କହିଥିଲେ—ଆନନ୍ଦ ! ତୁମ ସି· ସି. ଆର୍‌ରେ ମୁଁ ଏମିତ ଲେଖିବି ଯେ ତୁମେ ଯେମିତି ଅଳ୍ପ ଦିନ ଭିତରେ ଆଇ. ପି. ଏସ. ପାହ୍ୟାକୁ ଯାଇପାରିବ ।

ଚାକିରି କରୁଥିବା ଲୋକମାନଙ୍କ ପକ୍ଷରେ ପଦୋନ୍ନତିର ଆଶାଟା ହିଁ ସର୍ବଶ୍ରେଷ୍ଠ ଆକାଂକ୍ଷା । ଆନନ୍ଦ ଖୁବ ଖୁସିଥିଲା । ଖୁସିଥିବା ସ୍ୱାମୀର ଶଯ୍ୟା ହିଁ ସ୍ତ୍ରୀର ଏକମାତ୍ର କାମନା ।

ବାସର ରାତି, କୋରାପୁଟ ଆସିବା ପରର ପ୍ରଥମ ରାତି, ଆଉ ଆଜି ରାତି ଏକାକାର ହୋଇଯାଇଥିଲା । □□□

# ତେର

ଲୀଳାବତୀଙ୍କର ହଠାତ୍ ବିୟୋଗ ପୂରୋଟି ପରିବାରକୁ ବିପର୍ଯ୍ୟସ୍ତ କରିଛି । ନୀଳକଣ୍ଠ ଶଯ୍ୟାଶାୟୀ । ଲାବଣ୍ୟ ଆଉ କେତକୀ କାନ୍ଦି କାନ୍ଦି ଅଚେତ ପ୍ରାୟ । ଲାବଣ୍ୟର ସାନ୍ତ୍ୱନାଦାତା ଶ୍ରୀକାନ୍ତ ଆଉ କେତକୀର ସାନ୍ତ୍ୱନାଦାତ୍ରୀ ଉମାଶଙ୍କରୀ । କେତକୀର ଅବସ୍ଥାରେ ଆନନ୍ଦ ମ୍ରିୟମାଣ ।

ଲାବଣ୍ୟ ଏବଂ ଶ୍ରୀକାନ୍ତ ଟେଲିଗ୍ରାମ ପାଇବା ପରଦିନ ଉଡ଼ାଜାହାଜ ଯୋଗେ ଆସି ପହଞ୍ଚିଗଲେ । ଟେଲିଗ୍ରାମ କରିଥିଲି ସାଧୁ ।

କେତକୀ ଏବଂ ଆନନ୍ଦ ଆସିପାରିଲେ ନାହିଁ । କେତକୀ ଯଦିଓ ବିପଦ ବରଣ କରି ଆସିବାକୁ ବ୍ୟାକୁଳ ହେଉଥିଲା, ଉମାଶଙ୍କରୀ କୌଣସିମତେ ଏଥିରେ ରାଜି ହେଲେନାହିଁ ।

—ଗଲେ କଣ ମା' ଫେରିଆସିବ ? ଗର୍ଭରେ ଯାହାକୁ ଧରିଚୁ, ତା'କଥା ଆଗେ ଭାବ । ତୋ ପକ୍ଷରେ ଶ୍ୱଶୁରଘରଠୁ ବାପଘରଟା ଏତେ ବଡ଼ ହେଇଗଲା ?

ଆନନ୍ଦ ଏକା ଏକା ଆସିବ ବୋଲି ଭାବୁଥିଲା; କିନ୍ତୁ ତା ବି ସମ୍ଭବ ହେଲା-ନାହିଁ । ଆସନ୍ନ-ପ୍ରସବା ସ୍ତ୍ରୀକୁ ସୁଦୂର କୋରାପୁଟରେ କାହା ଦାୟିତ୍ୱରେ ଛାଡ଼ି ସେ ସପ୍ତାହେ ଅନୁପସ୍ଥିତ ରହିବ ?

କେତକୀର ଦେହଟା ସିନା କୋରାପୁଟରେ ରହିଲା, ମନଟା କିନ୍ତୁ ଉଡ଼ିଆସିଲା ବାପା ପାଖକୁ । ନାନୀ ନିଶ୍ଚୟ ଆସିଥିବ । ବାପାଙ୍କ ଭଲ ମନ୍ଦ ବୁଝୁଥିବ । ତଥାପି ଦୁଇ ଭଉଣୀ ରହିଥିଲେ, ବାପାଙ୍କ ଦୁଃଖ ଆହୁରି ଲଘବ ହେଇଥାନ୍ତା । ତା କପାଳ, ଏଇ ସମୟକୁ ଗର୍ଭବତୀ ରହିବାଟା ତା' ଭାଗ୍ୟଦୋଷ ।

ନୀଳକଣ୍ଠଙ୍କର ଦେହ ଆଉ ମନର ସ୍ୱାସ୍ଥ୍ୟ ସମ୍ପୂର୍ଣ୍ଣ ଭାଙ୍ଗିପଡ଼ିଛି । ସେ ବିଛଣାରୁ ଉଠୁନାହାନ୍ତି । ଶ୍ରେଷ୍ଠ ପିଲଟି ଯେମିତି ମା'ର ବିୟୋଗରେ ଅସହାୟ ହୁଏ, ସ୍ତ୍ରୀବିୟୋଗ ତାଙ୍କୁ ଠିକ୍ ସେମିତି ଲାଗୁଛି । ବାର୍ଦ୍ଧକ୍ୟରେ ସ୍ତ୍ରୀର ସାନ୍ନିଧ ଅତି ଆବଶ୍ୟକ । ବିୟୋଗ ଅତ୍ୟନ୍ତ ମର୍ମନ୍ତୁଦ । ସେ ଅଧିକାଂଶ ସମୟ ନୀରବ ରହୁଛନ୍ତି । ଲୀଳାବତୀ ତାଙ୍କ ସହିତ ନୀଳକଣ୍ଠଙ୍କର କଥା କହିବାର ଶକ୍ତିକୁ ଯେମିତି ଅପହରଣ କରିନେଇଛନ୍ତି । ଲାବଣ୍ୟ ତାଙ୍କର ସବୁ ଖବର ବୁଝୁଛି । ସେ ମଧ୍ୟ ତା ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ହେଇପଡ଼ିଛନ୍ତି ।

ନୀଳକଣ୍ଠ ସେଦିନ କ୍ଷୀଣକଣ୍ଠରେ କହିଲେ—ଆନନ୍ଦ କେତକୀ କେହି ଆସିଲେ ନାହିଁ ନା ମା' ?

ଲବଣ୍ୟ କହୁଛି—କେମିତି ଆସିବେ ? କେତକୀର ଯୋଉ ଅବସ୍ଥା ଏବେ ବାଟରୁ ସେ ଆସିବ କେମିତି ? ତାଙ୍କୁ ଗ୍ରହି ଆନନ୍ଦ ବା କେମିତି ଆସିବ ? ସେ ନ ଆସୁ ବାପା, ତାର ସବୁ ମଙ୍ଗଳ ହେଉ ।

ତାର ଅମଙ୍ଗଳ କଏ ଚାହୁଁ କରୁଛି ଯେ ମଙ୍ଗଳ ପାଇଁ ଏ ପ୍ରାର୍ଥନା ! କିନ୍ତୁ କେତେଥର କାହିଁକି ସେ ଗର୍ଭବତୀ ହେବା ଦିନଠୁ ଲବଣ୍ୟର ମନ ଭିତରେ ଅଦ୍ଭୁତ ଭୟର ସଞ୍ଚାର ହେଉଛି । କାହିଁକି ହେଉଛି ତାର କାରଣ ସେ ନିଜେ ବି ଜାଣେନା । ହୁଏତ କେତକୀର ଶ୍ୱଶୁର ଘରର ବ୍ୟବହାର ପାଇଁ ବା କେତକୀର ବୟସ ପାଇଁ ଅଥବା ଲବଣ୍ୟର ନିଜ ମନସ୍ତା ପାଇଁ । ମନରେ ସ୍ୱଚ୍ଛତା ଥିଲେ ସମସ୍ତ ଭୟ ଆଶଙ୍କା ଦୂରୀଭୂତ ହୋଇଯାଏ । ଆଉ ପଙ୍କିଳ ମନ ସବୁ ପ୍ରକାର ଭୟ ଆଶଙ୍କାର ଗନ୍ତାଘର । ଲବଣ୍ୟର ମନସ୍ତା ବେଳେବେଳେ ତା ଆୟତ୍ତରେ ରହୁନଥିଲା । କେତକୀ କାଲି ମା' ହବ । ଭାଗ୍ୟ ଜୋର୍ ଥିଲେ ପ୍ରଥମରୁ ହିଁ ପୁତ୍ରବତୀ ହେବ । ସ୍ୱାମୀ କୁଳର ମୁହଁ ଉଜ୍ଜ୍ୱଳ କରିବ । ଶାଶୂ ଯେତେ ଦୁଷ୍ଟ ହୁଅନ୍ତୁ ପଛେ କୋଳରେ ନାତି ପାଇଲେ ବୋହୂକୁ ମୁଣ୍ଡରେ ବସେଇବେ । ବସାନ୍ତୁ ! ସେଥିରେ ଲବଣ୍ୟ ତ ଖୁସି ହବା କଥା । ତା ନହେଲେ ଏସବୁ କଣ ଭାବୁଛି ସେ ! ନା ତା ମନରେ ବି ସାନ ଭଉଣୀ ପ୍ରତି ଈର୍ଷା ଜାତ ହେଲାଣି ? ପ୍ରତ୍ୟକ୍ଷରେ ନହେଲେ ବି ପରୋକ୍ଷରେ ? ସଜ୍ଞାନରେ ନହେଲେ ବି ଅଜ୍ଞାନରେ ?

ତା ଆଖି ଆଗରେ ସେ ଯେମିତି ଦେଖୁଛି ଗୋଟିଏ ବୃନ୍ତରେ ଫୁଟିଥିବା ଦୁଇଟି ଫୁଲରୁ ଗୋଟିଏ ଫଳବତୀ, ଆରଟି ବୃନ୍ତଚ୍ୟୁତ । ସଂସାର ଯାତ୍ରା ପଥରେ ଗୋଟିଏ ପରିବାର ଆଗ୍ରଗାମୀ, ସୃଷ୍ଟିଶୀଳ, ଅନ୍ୟଟି ଧ୍ୱାଣ୍ତ—ବନ୍ଧ୍ୟା । କାନ ପାଖରେ ତାର ବାରମ୍ବାର ଶବ୍ଦାୟିତ ହେଉଛି ଏହି କଥା—ବନ୍ଧ୍ୟା !

ଦିଲ୍ଲୀରେ ଅନେକ ଡାକ୍ତରୀ ପରୀକ୍ଷା କରାଯାଇଛି । ସମସ୍ତେ ନିରାଶାର ବାଣୀ ଶୁଣେଇଛନ୍ତି ।

ତିନିମାସ ଅକ୍ଳାନ୍ତ ପରିଶ୍ରମ । ଡାକ୍ତର କହୁଥିଲେ—ବନ୍ଧ୍ୟାତ୍ୱ ସ୍ତ୍ରୀ-ପୁରୁଷ ଉଭୟଙ୍କ ଦୋଷରୁ ବା କେହି ଜଣକ ଦୋଷରୁ ହୋଇପାରେ । ଶହେରୁ ତେତିଶ ଭାଗ ଉଭୟଙ୍କ ଦୋଷରୁ, ଆଉ ତେତିଶ ଭାଗ ପୁରୁଷ ଦୋଷରୁ ଏବଂ ଅବଶିଷ୍ଟ ତେତିଶ ଭାଗ ସ୍ତ୍ରୀ ଦୋଷରୁ ଘଟିଥାଏ । ଆଜିର ଅବସ୍ଥା ପାଇଁ କିଏ ଦାୟୀ ? ଉଭୟେ, ନାଁ ଜଣେ କେହି ?

ଏ ନେଇ ଅନେକ ଗବେଷଣା ଚାଲିଲା । ପ୍ରଥମେ ସୁଶିଲ ଶ୍ରୀକାନ୍ତ ଉପରେ ପରୀକ୍ଷା । ମାସକୁ ଥରେ ଲେଖାଏଁ ତିନି ମାସରେ ତିନିଥର ପରୀକ୍ଷା ପରେ ଡାକ୍ତର-ମାନେ ସିଦ୍ଧାନ୍ତରେ ପହଞ୍ଚିଲେ ଯେ ତାର ପୁରୁଷତ୍ୱରେ କୌଣସି ଦୋଷ ନାହିଁ ।

ଏ ସିଦ୍ଧାନ୍ତରେ ଲବଣ୍ୟ ଭାଙ୍ଗି ପଡ଼ିଲା । ତା’ହେଲେ ସବୁ ଦୋଷ କ’ଣ ତାର ?

ଡାକ୍ତର ତା ଉପରେ ପରୀକ୍ଷା ଚଳାଇବା ପୂର୍ବରୁ ଆଶ୍ୱାସନାର ବାଣୀ ଶୁଣେଇ କହିଲେ—ସ୍ତ୍ରୀର ବନ୍ଧ୍ୟାତ୍ୱ ଦୁଇପ୍ରକାର ହୋଇପାରେ । ଗୋଟିଏ ସାଧ୍ୟ, ଆଉ ଗୋଟିଏ ଅସାଧ୍ୟ । ଶେଷ ପର୍ଯ୍ୟନ୍ତ ଦେଖାଯାଉ । ଲବଣ୍ୟ ମନେ ମନେ ଭଗବାନଙ୍କୁ ଡାକିଲା—ଯଦି କିଛି ଦୋଷ ଥାଏ, ତାହାପାଇଁ ଚିକିତ୍ସା ଥାଉ, ଏଠି ନଥିଲେ ବି ପୃଥିବୀର ଯେକୌଣସି ଦେଶରେ ଥାଉ ।

କିନ୍ତୁ ନିଷ୍ଫଳ ପ୍ରାର୍ଥନା । ଡାକ୍ତର ନାନାବଣୀ ଦେଶମୁଖ ଦୁଃଖର ସହିତ କହିଲେ—ନା, ଏହା ଅସାଧ୍ୟ । ଯୌନାଙ୍ଗର ଅସମ-ବୃଦ୍ଧି ପାଇଁ ସନ୍ତାନଧାରଣ ଅସମ୍ଭବ । ଏଥିପାଇଁ କୌଣସି ଚିକିତ୍ସା ନାହିଁ । ବରଂ ଆପଣମାନେ ବଂଶରକ୍ଷାପାଇଁ ପୋଷ୍ୟପୁତ୍ର ଗ୍ରହଣ କରନ୍ତୁ ।

ଏ ପ୍ରସ୍ତାବରେ ଶ୍ରୀକାନ୍ତର ମନ ମାନିଲାନାହିଁ । ସଂସାରରେ ପୋଷ୍ୟପୁତ୍ରର ଇତିହାସ ଅତ୍ୟନ୍ତ କରୁଣ । ପାଶ୍ଚାତ୍ୟ ଜଗତରେ ତ ପ୍ରତିମୁହୂର୍ତ୍ତରେ ପୋଷ୍ୟଦମ୍ପତି ଏବଂ ପୋଷ୍ୟପୁତ୍ର ମଧ୍ୟରେ ସଂଘର୍ଷ ଲାଗି ରହିଛି । ପୋଷ୍ୟପୁତ୍ର ନିଜର ହେବା ଠାରୁ ଶହେ ଭାଗରୁ ପାଞ୍ଚ ଭାଗ ।

ଭବିଷ୍ୟତ ଅନ୍ଧକାର । ସେଇ ଅନ୍ଧକାର ଭିତରେ ଶ୍ରୀକାନ୍ତ ଆଉ ଲବଣ୍ୟ ଉଭୟ ଯେମିତି ପଥହରା ।

ନୀଳକଣ୍ଠ ଡାକିଲେ—ମା’ ।

ଲବଣ୍ୟ ଉତ୍ତର ଦେଲା—ହଁ ବାପା !

କାଲିପରା ତୋ ମା’ର ଦଶଦିନ ?

ହଁ ।

ତା’ର ସମାଧି ତିଆରି କାମ କେତେ ବାକି ଗଲା ?

ସରିଲାଣି ।

କାଲିକି ଶେଷ ହୋଇଯିବ ?

ହଁ ! ମିସ୍ତ୍ରୀ କହୁଥିଲା କାଲି ସକାଳ ସୁଦ୍ଧା ସରିଯିବ ।

ମିସ୍ତ୍ରୀକୁ କହିଦବୁ ତା’ ପାଖରେ ମୋପାଇଁ ଜାଗାଟାକୁ ଚିହ୍ନ ଦେଇ ରଖି ଦେଇ ଯିବ ।

ଲବଣ୍ୟ ଆଶ୍ଚର୍ଯ୍ୟ ହେଲା । ବସ୍ତୁ ଆଉ ଥାଉ ବାପାଙ୍କର ଏ କି ଦୁର୍ଭାବନା ! ସେ ବାପାଙ୍କର ରକ୍ତଶୂନ୍ୟ ମୁହଁଟାକୁ ଚାହିଁରହି କହିଲା—ବାପା, ତମେ ଏସବୁ କଣ କହୁଚ ?

ନୀଳକଣ୍ଠ ଗଳାକୁ ପରିଷ୍କାର କରି କହିଲେ—କିଛି ଭୁଲ୍ କହୁନାହିଁ ମା' ! ଯାହା କହୁଚ ସବୁ ଠିକ୍ କହୁଚ । ମୁଁ ଆଉ ବେଶିଦିନ ନୁହେଁ । ମଲାପରେ କାହା କାନ୍ଧ ଉପରେ ମୁଁ ଶ୍ମଶାନକୁ ଯିବି, କିଏ ଜାଣିଚି ? ନେବା ଲୋକ ମୋତେ ଯଦି ତୋ ମା ପାଖରେ ଜାଗା ନ ଦେଇ ଅନ୍ୟ ଆଡ଼କୁ ନେଇଯାଆନ୍ତି ! ବରଂ ଏବଠୁ ଚିହ୍ନ ଦେଇ···

କଣ ଭାବିଲେ, ତାପରେ କହିଲେ—ମା' ତୁ ତ ଅନେକ ଆଡ଼େ ବୁଲୁଚୁ ! ଦେଖିଥିବୁ, ଭବିଷ୍ୟତ ପାଇଁ ଜାଗା ନିର୍ଦ୍ଦିଷ୍ଟ କରି ଅନେକ ଲେଖିଦିଅନ୍ତି— Site for Commercial Bank, Site for Hotel, Site for college—ସେମିତି ଯଦି ଚିହ୍ନିତ ଜାଗାଟାରେ ଲେଖି ଦିଅନ୍ତି Site for Nilakantha Mahapitra's Grave—ଭଲ ହୁଅନ୍ତା । ତୁ ପରା ଲଣ୍ଡନରେ ଥିଲୁ ମା—ସେଠି ଏଥିପାଇଁ ଆଗରୁ ଜାଗା କିଣି ରଖି ଯିବାକୁ ପଡ଼େ— ଜାଣିନୁ ?

—ଜାଣେ । କିନ୍ତୁ ସେଠିକାର ପରିବାର ଆଉ ଭାରତୀୟ ପରିବାର ଭିତରେ ପାର୍ଥକ୍ୟ ତ ଅନେକ । ସେଠି ଏକାନ୍ନବର୍ତ୍ତୀ ପରିବାର ତ ପ୍ରାୟ ନ ଥାଏ । ବାପ ପୁଅ ଅଲଗା—ହୁଏତ ମୃତ୍ୟୁବେଳେ ପାଖରେ କେହି ନଥାନ୍ତି···

ଏଠି ବି ନୀଳକଣ୍ଠଙ୍କ ମୃତ୍ୟୁବେଳେ ପାଖରେ କିଏ ଥିବ ? ସାଧୁ, ମଧୁ, ଗୁଧୁ ପୁରୁବି ହେଲେ ବି ଏ ପରିବାର ସହିତ ସେମାନଙ୍କର କୌଣସି ସମ୍ପର୍କନାହିଁ । ନୀଳକଣ୍ଠ ଯଦି ତାଙ୍କ ଭାଗ ପୈତୃକସମ୍ପତ୍ତି ସେମାନଙ୍କୁ ଦାନ କରିଯାନ୍ତି, ତେବେ ସେମାନେ ହୁଏତ ନୀଳକଣ୍ଠଙ୍କର ମୃତଦେହର ସତ୍କାର କରିପାରନ୍ତି । ଯଦି ତା' ନ ହୁଏ, ସେମାନେ କଣ କରିବେ ତାହା ନୀଳକଣ୍ଠ ନିଜର ଜୀବଦଶାରେ ଭାବି ପାରୁ ନ ଥିଲେ ।

ମୃତ୍ୟୁପରେ ପୁନଃସ୍ଥାନ ନୀଳକଣ୍ଠଙ୍କର ପରିବାରରେ ଆଉ ଜମିର ଆବଶ୍ୟକତା କ'ଣ ? କିଏ ଭୋଗ କରିବ ସେ ଜମିକୁ ? ଲବଣ୍ୟ ?

ନା, ଲବଣ୍ୟ ଜମିପାଇଁ ଲାଳାୟିତ ନୁହେଁ । ପିତାର ଉପଯୁକ୍ତ କନ୍ୟା ସେ । ପିତାର ଆଦର୍ଶ, ପିତାର ଆଦେଶ ତାର ଶିରୋଧାର୍ଯ୍ୟ ।

ବାକି କେତକୀ ? ସେ କଣ ଏ ଜମିରୁ ଭାଗ ନେବାକୁ ଆସିବ ?

ନା, ସେ ହୁଏତ ଆସିବ ନାହିଁ; କିନ୍ତୁ ତାର ଶାଶୁ, ଶ୍ବଶୁର, ସ୍ୱାମୀ, ପୁତ୍ର ?

ନୀଳକଣ୍ଠଙ୍କ ଆଖିରୁ ଲୁହ ଝରିପଡ଼ିଲା । ଲବଣ୍ୟ ଆଖିର ଲୁହକୁ ତଳିଲାରେ ପୋଛି କହିଲା—"ବାପା, ତୁମେ ଅଧୈର୍ଯ୍ୟ ହବାର କିଛି କାରଣନାହିଁ । ତମକୁ ଅନେକ ଥର କହୁଛି ଆମ ପାଖକୁ ଯିବାକୁ—ଯାଉନାହଁ । ଏଥର ତମକୁ ଆମେ ନେଇଯିବୁ ।

ନା – ନୀଳକଣ୍ଠ କହିଲେ—ଯାଇଥିଲେ ମୁଁ ଆଉ ତୋ ମା' ହାତରେ ଯାଇଥାନ୍ତି । ସେ ମଣଚ ବୋଲି କ'ଣ କହୁ ଦେଖିବନ ? ମୁଁ ଗ୍ଲଲିଗଲେ ସେ ମୋତେ ସ୍ୱାର୍ଥପର ବୋଲି ଭାବିବ । ସେ ଯୋଉଠି ମଣଚ, ମୁଁ ସେଇଠି ମରଣକୁ ଅପେକ୍ଷାକରି ରହିବ । ଏ ଭିଟାମାଟି ଗ୍ଲଡ଼ି ମୁଁ କ୍ୱାଆଡ଼କୁ ଯିବନାହିଁ ।

ଲାବଣ୍ୟ ମୁହଁରେ ଆଉ କିଛି ଉତ୍ତର ନଥିଲା ।

ମଣିଷ ଯେତେ ବଡ଼ ହେଲେ ବି ଶେଷ ଜୀବନରେ ପ୍ରତ୍ୟେକେ ଇଚ୍ଛା କରନ୍ତି ନିଜ ଜନ୍ମମାଟିରେ ଶେଷ ନିଃଶ୍ୱାସ ତ୍ୟାଗ କରିବାକୁ ।

ସେମାନେ ଗ୍ଲହାନ୍ତି—ନୀଳକଣ୍ଠଙ୍କୁ ଢ଼କ୍କୀ ନେବେ । ସେଠାରୁ ପୁଣି ଭାରତ ବାହାରକୁ । ନୀଳକଣ୍ଠଙ୍କର ସତ୍ତା ଲୋପ ହୋଇଯିବ । ଏହା ସେ କେବେ ହେଲେ କରେଇ ଦେବେନାହିଁ । କାହିଁକି ବା ସେ ଯିବେ ? କ'ଣ ଆଉ ତାଙ୍କର କାମ ? ଜୀବନରେ ମୃତ୍ୟୁକୁ ଅପେକ୍ଷାକରି ରହିବା ଛଡ଼ା ଅନ୍ୟ କ'ଣ ଅଛି ? ମରଣ-ରୂପକ ଫାଶୀଖୁଣ୍ଟରେ ସେ ତ ଚଢ଼ି ସାରିଲେଣି, ଅପେକ୍ଷା କେବଳ ଶେଷ ମୁହୂର୍ତ୍ତକୁ ।

ସେ କହିଲେ—ଝରକାଟା ଖୋଲି ଦେ ମା, ଘର ଭିତରକୁ ପବନ ଆଲୁଅ ଆସୁ ।

ଲାବଣ୍ୟ ଯାଇ ବନ୍ଦଥିବା ଝରକା ଖୋଲିଦେଲା । କହିଲା—ତମର ଗ୍ଲହା ଖିଆ ବେଳ ହୋଇଗଲା । ମୁଁ ଗ୍ଲହା ଆଣେ ବାପା !

ନୀଳକଣ୍ଠଙ୍କ ନୀରବ ସମ୍ମତି ପାଇ ସେ ତଳକୁ ଗଲା ।

ତଳେ ଶ୍ରୀକାନ୍ତ ତାର ଦାୟିତ୍ୱ ତୁଲାଉଛି । ଦଶାହ କର୍ମରେ ବ୍ରାହ୍ମଣ ଓ ଜ୍ଞାତି ଭୋଜନପାଇଁ ଆସିଥିବା ଜିନିଷପତ୍ରକୁ ତାଲିକା ସହିତ ମିଳାଇ ସେ ଭଣ୍ଡାରଘରେ ରଖାଉଛି । ତଳେ ଅନେକ ବନ୍ଧୁ ବାନ୍ଧବ । ନୀଳକଣ୍ଠଙ୍କ ଜୀବନର ଶେଷକର୍ମ । ତେଣୁ ପୂର୍ବେ କରିଥିବା କର୍ମମାନଙ୍କଠାରୁ ଏହା ଯେପରି କୌଣସି ଗୁଣରେ କମ୍ ନ ହୁଏ, ଏହା ଥିଲା ତାଙ୍କର ଇଚ୍ଛା ।

ଲାବଣ୍ୟ ଶ୍ରୀକାନ୍ତକୁ କହିଲା—ଗ୍ଲହାପାଇଁ କିଛି ଚିନି ଡ୍ରେପେଇ ଘରକୁ ପଠାଅ ।

ଗ୍ଲହା କରି କପେ ଶ୍ରୀକାନ୍ତପାଇଁ ପଠେଇଦେଇ ଆଉ କପେ ନିଜେ ନେଇ ଉପରକୁ ଗଲା । ଗ୍ଲହାଟା ବାପାଙ୍କୁ ବଢ଼େଇଦେଇ କହିଲା—ବାପା, ଭଣ୍ଡାରଘରେ ଜିନିଷ ସବୁ ରହୁଛି । ତୁମ ଜ୍ୱାଇଁ ଏକା ଏକା ହଇରାଣ ହେଉଛନ୍ତି । ମୁଁ ତଳକୁ ଯାଉଛି । ତମେ ଟିକିଏ ତଳଆଡ଼େ ଯାଆନ୍ତ ନାହିଁ !

ନୀଳକଣ୍ଠ କହିଲେ—ନା ମା, ତୁ ଯା, ମୁଁ ବରଂ ବିଶ୍ରାମ କରୁଚି ।

ଲବଣ୍ୟ ତଳକୁ ଚାଲିଆସିଲା ।

କନକ ହାତରେ ନ୍ୟସ୍ତ କରାଯାଇଛି ପାନଭଙ୍ଗାର ଦାୟିତ୍ୱ । କନକ କହିଲା—ଅପା, ଗୁଆସବୁ ବାହାର କରିଦେଲେ ମୁଁ ଭଙ୍ଗାଇନଅନ୍ତି ।

ଲବଣ୍ୟ କହିଲା—ଯା, ତୋ ଭିଣୋଇଙ୍କଠୁ ମାଗିଆଣିବୁ ।

କନକ ସିଧାସଳଖ ଶ୍ରୀକାନ୍ତ ପାଖକୁ ଯାଇ ଗୁଆ ମାଗିବାକୁ ଲଜ୍ଜାବୋଧ କଲା । ଆଗରୁ ଯେ ସେ ତା ଆଗକୁ ନ ଯାଇଛି ତାହା ନୁହେଁ, ମାତ୍ର କାହିଁକି କେଜାଣି ଆଜି ସେ ଯାଇପାରିଲାନାହିଁ । ଭିଣୋଇ ଶାଳୀମାନଙ୍କର ଅନ୍ତରପାତ୍ର । ହେଲେ ବି କନକ ତାର ପୋଡ଼ା କପାଳ ନେଇ କୋଉ ମୁହଁରେ ତାଙ୍କ ଆଗକୁ ଯିବ !

ଲବଣ୍ୟ କହିଲା—ଯାଉନୁ କାହିଁକି ? ଲାଜ ଖାଇଯାଉଚ । ନିଜେ ଯାଇ ନ ଆଣିଲେ ଆଉ କେହି ଆଣିଦେବେନି । ଦାୟିତ୍ୱଟା ତୋର—ମୋର ନୁହେଁ ।

ଅଗତ୍ୟା କନକ ଶ୍ରୀକାନ୍ତ ଆଡ଼କୁ ଆଗେଇଗଲା । ଲବଣ୍ୟ ପାଟିକରି କହିଲା—କନକ ଯାଉଛି, ଗୁଆଗୁଡ଼ା ତାକୁ ଦେଇଦିଅ ।

ଗୁଆ ନେଇ କନକ ଫେରିଆସିଲା । ଶ୍ରୀକାନ୍ତ କନକକୁ ଦେଖି ପ୍ରଥମଥର ପାଇଁ ଆଜି ଭାବିଲା—ଏଇ ସୁନ୍ଦରୀ ଝିଅଟିର ଜୀବନଟାକୁ ଏମିତି ବ୍ୟର୍ଥ କରିଦିଆଯାଉଛି କାହିଁକି ? ଏ ଝିଅଟି ଯଦି ପାଶ୍ଚାତ୍ୟ ଦେଶରେ ଜନ୍ମ ଗ୍ରହଣ କରିଥାନ୍ତା, ଯାହାକୁ ପାଇବାଲାଗି ପୁରୁଷମାନଙ୍କ ମଧ୍ୟରେ ପ୍ରତିଯୋଗିତା ହେଉଥାନ୍ତା ।

କନକ ବଣରମଲ୍ଲୀ । ତାର ଫୁଟିବା ଆଉ ଝଡ଼ିବା ସହିତ ଜୀବଜଗତର କଣ ବା ସଂପର୍କ ଅଛି ? ତା ବିଷୟରେ ଭାବନା କାହିଁକି—ଚିନ୍ତା କାହିଁକି ?

ଅବଶ୍ୟ ନଥିଲା । କିନ୍ତୁ ତା' ବିଷୟରେ ତା ବାପା-ମା' ଚିନ୍ତା କରିବାକୁ ଆରମ୍ଭ କରିଛନ୍ତି । ଜେଜେବାପା ବଞ୍ଚିଥିବା ବେଳେ କନକ ତାଙ୍କରି ରହୁଥିଲା । ଶାଶୁଘରୁ ଫେରିବାପରେ ଶାଶୁ ଆଉ ନେବାକୁ ଚାହୁଁନାହାନ୍ତି । ବାପଘରେ ସେ ବାପା ମାଙ୍କର ଦୁଶ୍ଚିନ୍ତାର କାରଣ ହେଇଗଲାଣି । କଥାକଥାକେ ଜବାବ ଦେଉଛି, ବିଧବାର ଆଚରଣ ପାଳନ କରୁନାହିଁ, ପ୍ରକାଶ୍ୟରେ ମାଛ ଖାଉଛି । ବାପା ମା ତାକୁ ଡର କରୁଛି କହୁ ନାହାନ୍ତି । କଥାକଥାକେ ଫାଶୀ ଲଗେଇ ମରିବାର ଧମକ ଦେଇ ତାଙ୍କୁ ଡରେଇ ରଖିଛି ।

ଏଥର ଲବଣ୍ୟ ଆସିବାଠାରୁ ସେ ନୀଳକଣ୍ଠଙ୍କ ଘରେ ରହୁଛି ।

ଦଶାହ କର୍ମ ସୁରୁଖୁରୁରେ ହେଇଗଲା । ସମସ୍ତେ ନୀଳକଣ୍ଠଙ୍କର ଭୂରିଭୂରି ପ୍ରଶଂସା କଲେ । ଉଚ୍ଚ ମିଜାଜର ଲୋକ ନହେଲେ ଏମିତି କର୍ମ କଣ ସମ୍ଭବ ! ବ୍ରାହ୍ମଣଭୋଜନ ଓ ଜ୍ଞାତିଭୋଜନ ବେଳେ ନୀଳକଣ୍ଠ ନିଜର ଅସୁସ୍ଥତା ସତ୍ତ୍ୱେ ନିଜେହିଁ

ସବୁ ତଦାରଖ କରି ବୁଲୁଥିଲେ । ଏଥିରେ ଶ୍ରୀକାନ୍ତ ବା ଲବଣ୍ୟ କେହି ବାଧା ଦେଇ ନଥିଲେ । ଯଦି ବୁଲବୁଲି କରି ତାଙ୍କର ମନର ବଳ ଫେରିଆସେ !

ହଁ, ଫେରିଆସିଥିଲା । ସେଇ ଦୁଇଦିନ, ତା ପରେ ସବୁ ଯେମିତି ପୁଣି ଅନ୍ଧକାର ହୋଇଗଲା । ବାରଦିନ ସନ୍ଧ୍ୟାରେ ସେଇ ଯେ ନୀଳକଣ୍ଠ ଉପରକୁ ଗଲେ ଆଉ ତଳକୁ ଆସିବାକୁ ଇଚ୍ଛା କଲେ ନାହିଁ । ସେ ଦିନ ଲାବଣ୍ୟକୁ କହିଲେ— ବୁଝିଲୁ ମା—ଏତେ ଦିନ ମୁଁ ଆଉ ତୋ ମା ସାଙ୍ଗହୋଇ ଥିଲୁ । ଏବେ ମୁଁ ଏକା ରହିବି । ଦଶାହ କର୍ମ ପରେ ତା କଥା ଆମେ ଆସ୍ତେ ଆସ୍ତେ ଭୁଲିଯିବୁ । ତୋ ମା ସ୍ୱର୍ଗରେ ଥାଇ କାନ୍ଦିବ । ଆମେସବୁ ତା' ପ୍ରତି ବିଶ୍ୱାସଘାତକତା କରିଚୁ । ଭଗବାନଙ୍କୁ ଡାକ ମା, ମୋତେ ଶୀଘ୍ର ତୋ ମା ପାଖକୁ ନେଇଯାଆନ୍ତୁ । ଏକା ଏକା ହନ୍ତସନ୍ତ ହେବା ଅପେକ୍ଷା ସେଇ ମୋ ପାଇଁ ଭଲ···ହଁ, ସେଇ ମୋପାଇଁ ଭଲ ।

ଲବଣ୍ୟ ଆଖିରୁ ଲୁହ ପୋଛି କହିଲା—ବାପା, ତୁମେ ମୋତେ ବ୍ୟସ୍ତ ହୁଅ ନାହିଁ । ମୁଁ ତୁମ ପାଖରେ ରହିବି ।

ନୀଳକଣ୍ଠ ଚମକିପଡ଼ିଲେ । କହିଲେ—କଣ କହିଲୁ ମା, ତୁ ମୋ ପାଖରେ ରହିବୁ ? ଶ୍ରୀକାନ୍ତକୁ ଏକା ଛାଡ଼ି ତୁ ମୋ ପାଖରେ ରହିବୁ ? ନା, ମୁଁ ଏତେଟା ସ୍ୱାର୍ଥପର ହୋଇପାରିବିନି ।

କାହିଁକି ନ ରହିବି ବାପା ? ମୁଁ ଯଦି ତୁମର ପୁଅ ହୋଇଥାନ୍ତି ? ମୁଁ ଯଦି ତୁମର ଝିଅ ନହୋଇ ତୁମର ବୋହୂ ହୋଇଥାନ୍ତି ? ତୁମକୁ ଏ ଅବସ୍ଥାରେ ଛାଡ଼ି କୁଆଡ଼କୁ ଯାଇପାରନ୍ତି ?

ନୀଳକଣ୍ଠ କହିଲେ—ନା ମା', ମୋର ଆଉ କ'ଣ ଅଛି ? କେତେଟା ଦିନ ବା ଅଛି—ମୋ ପାଇଁ ତୁ ଏତେବଡ଼ ସ୍ୱାର୍ଥ ତ୍ୟାଗ କରିବୁ କାହିଁକି ? ମରଣମୁହଁକୁ ଆଗେଇ ଯାଉଥିବା ଗୋଟାଏ ଅକର୍ମା ବୁଢ଼ା ପାଇଁ ନିଜର ସଂସାରକୁ ଛାରଖାର କରିବୁ କାହିଁକି ? ଶ୍ରୀକାନ୍ତ ସିନା ମୁହଁରେ କିଛି କହିବ ନାହିଁ ହେଲେ ମୁଁ ତ ଜାଣିଚି ମା, ତା ହୃଦୟ ଭିତରଟା କେମିତି ଜଳି ଉଠିବ ଦୁଃଖରେ । ପରେ ସେଇ ଦୁଃଖ ଘୃଣାରେ ପରିଣତ ହେବ । ସ୍ୱାମୀ ପ୍ରତି ତୋର ଯେଉଁ କର୍ତ୍ତବ୍ୟ, ସେଥିରେ ଅବହେଳା କରିବା ମହାପାପ ।

ସ୍ୱାମୀ !

ରୋଗଗ୍ରସ୍ତ ପିତା !

କାହା ପ୍ରତି ତାର କର୍ତ୍ତବ୍ୟ ଅଧିକ ? କାହାର ଦାୟିତ୍ୱ ସେ ତୁଲାଇବ ?

ସେଦିନ ଏକାନ୍ତରେ ତା ମନର କଥା ସେ ଶ୍ରୀକାନ୍ତ ଆଗରେ ପ୍ରକାଶ କଲା । କିଛି ଦିନ ମୁଁ ରହେ । ବାପାଙ୍କୁ ବୁଝେଇ ସୁଝେଇ ନେଇଯିବା ପାଇଁ କିଛି ସମୟ

ଦରକାର । ତୁମେ ବରଂ ଯାଅ—କେତେଦିନ ଛୁଟିନେଇ ରହିବ ? ତୁମେ ନିଜ ମୁହଁରେ ବାପାଙ୍କୁ ଏକଥା ନକହିଲେ ସେ ରାଜି ହେବେ ନାହିଁ ।

ଶ୍ରୀକାନ୍ତ ବାଧ ହୋଇ ଶ୍ୱଶୁରଙ୍କୁ ଏ ପ୍ରସ୍ତାବ ଦେଲା—ଆପଣଙ୍କ ଝିଅ କିଛିଦିନ ଏଠାରେ ରହନ୍ତୁ ।

ନୀଳକଣ୍ଠ ପ୍ରଥମେ କହିଲେ—ନାଁ ।

ଶ୍ରୀକାନ୍ତ ବୁଝେଇଲା—ଅନ୍ତତଃ ଆପଣଙ୍କର ଦେହ ଆଉ ଟିକିଏ ସୁସ୍ଥହେବା ଯାଏ ରହନ୍ତୁ । ମୁଁ ଯାଉଛି । କିଛି ଦିନ ପରେ ଆସି ତାଙ୍କୁ ନେଇଯିବି ।

ନୀଳକଣ୍ଠ ଚୁପ୍ ରହିଲେ । ଲାବଣ୍ୟକୁ ଛାଡ଼ି ଶ୍ରୀକାନ୍ତ ବିଦାୟନେଲା ।

□□□

# ଚଉଦ

ନୀଳକଣ୍ଠଙ୍କର ଶାରୀରିକ ଅସୁସ୍ଥତାଠାରୁ ମାନସିକ ଅସୁସ୍ଥତାହିଁ ଅଧିକ । ସ୍ମୃତି ଭିତରଟା ଜଳିପୋଡ଼ି ଯାଉଛି । ବ୍ୟର୍ଥତାର ହାହାକାର—ସ୍ତ୍ରୀ ବିୟୋଗ ଜନିତ ହାହାକାର—ଏବଂ ସର୍ବୋପରି ଲବଣ୍ୟର ଭାଗ୍ୟପାଇଁ ହାହାକାର । ଏମିତି ଭାଗ୍ୟ ନେଇ ଲବଣ୍ୟ ଜନ୍ମି ନଥିଲେ ! ସ୍ତ୍ରୀ ଜନ୍ମ ପାଇ ମା ନ ହୋଇପାରିବାଠାରୁ ଜନ୍ମ ନ ହବା ହିଁ ଭଲ ।

ଲବଣ୍ୟର ମୁହଁକୁ ଚାହିଁଲେ ତାଙ୍କର ଦୁଃଖ ଅଧିକ ବଢ଼ିଯାଏ । ପ୍ରତିଦିନ ପଚାରି ବୁଝନ୍ତି ଶ୍ରୀକାନ୍ତଠାରୁ କିଛି ଚିଠି ଆସିଛି କି ନାହିଁ ? ଯଦି ଆସିଥାଏ ସେ କଣ ଲେଖିଛି ? ତାର ଦେହ ଭଲ ଅଛି ତ ! ପୁଝାରୀ ରାନ୍ଧଣା ଆଉ କେତେ ଦିନ ସେ ଖାଇବ ?

ଲବଣ୍ୟ କହେ—ତାଙ୍କପାଇଁ ତୁମେ ମୋଟେ ଭାବନି ବାପା ! ସେ ଠିକ୍ ଚଳିଯାଇପାରିବେ ।

କିନ୍ତୁ କେତେଦିନ ? ଏଇ ସମସ୍ୟାଟା ଯଦି କ୍ଷୁଦ୍ର ନହୋଇ ଦୀର୍ଘ ହୁଏ ? ନୀଳକଣ୍ଠଙ୍କର ସହସା ମୃତ୍ୟୁ ନହୋଇ ସେ ଯଦି ଆହୁରି ଅନେକ ଦିନ ବଞ୍ଚି ରହନ୍ତି ?

ଲବଣ୍ୟ ଭାବୁଥିଲି କେତକୀର ପ୍ରସବ ପରେ ଯଦି ସେ କିଛିଦିନ ଓ କେତକୀ କିଛିଦିନ ବାପାଙ୍କ ପାଖରେ ରହିବାର ବ୍ୟବସ୍ଥା ହୋଇପାରନ୍ତା !

କୋରାପୁଟ ଡାକ୍ତରଖାନାରେ କେତକୀ ପୁତ୍ର ସନ୍ତାନ ଜନ୍ମ କରିଛି । ଉମାଶଶୀ ଚିଠି ଲେଖିଛନ୍ତି—ସମୁଦି, ତୁମ ଝିଅ ଭାଗ୍ୟବତୀ । ମୋ ବଂଶର ମୁହଁ ଉଜ୍ଜ୍ୱଳ କରିଛି । ଏତେବେଳକୁ ଅଭାଗିନୀ ମା'ଟା ବଞ୍ଚିଥିଲେ···

ନୀଳକଣ୍ଠଙ୍କ ଆଖି ପୁଣି ଅଶ୍ରୁସଜଳ ହେଲା । ଅଭାଗିନୀ ଲୀଳାବତୀ ଏ ସୌଭାଗ୍ୟ ଦେଖିବା ପୂର୍ବରୁ ବାଟକାଟିଲେ ।

ଏକୋଇଶିଆ କୋରାପୁଟରେ ନହୋଇ ବାଲେଶ୍ୱରରେ ହେବ । ଚିଠିରେ ଯିବାପାଇଁ ନିମନ୍ତ୍ରଣ କରିଛନ୍ତି ସମୁଦୁଣୀ ।

ନୀଳକଣ୍ଠ ନିଜେ କଣ ଯାଇପାରିବେ ? ସାଧୁ, ମଧୁ, ରାଧୁ ଅନୁପସ୍ଥିତ । ଅଜାଙ୍କ ଦଶାହ କର୍ମ ପାଇଁ ମା' ସହିତ ମାମୁଁଘରକୁ ଯାଇଛନ୍ତି । କେତକୀ ପୁଅର ଏକୋଇଶାକୁ କିଏ ଯିବ ?

ଲାବଣ୍ୟ କହିଲା—ମୁଁ ଯିବି ବାପା ! କେତକୀକୁ ଅନେକ ଦିନ ହେଲା ଦେଖିନି—ଦେଖିବି । ଏକୋଇଶା ପରେ ମାସେ ଦି' ମାସ ପାଇଁ ଏଠିକି ଆସିବାପାଇଁ କହି ଆସିବି ।

—ତୁ ଯିବୁ ? ନୀଳକଣ୍ଠ ଆଶ୍ଚର୍ଯ୍ୟ ହେଲେ—ତୁ ସେଠିକି ଯିବୁ ମା' ?

ହଁ—ଲାବଣ୍ୟ ପୁଣି କହିଲା—ମୋର ନ ଥାଉ ପଛେ, ତାର ହୋଇଚି । ମୁଁ ଆଜି ଭାରି ଖୁସି ବାପା ! ମୁଁ ଯିବି । ନିଶ୍ଚେ ଯିବି ।

—କିନ୍ତୁ ତା ଶାଶୁ ଉମାଶଶୀ ଯେମିତିକା ଲୋକ, ଯଦି କିଛି କହିଦେବେ !

ଲାବଣ୍ୟ କହିଲା—ଭୟ କରନି ବାପା ! ତମେ ନୀଳକଣ୍ଠ ହୋଇ ସଂସାରର ସବୁ ବିଷତକ ପିଇ ଯେମିତି ଅମୃତ ବିତରଣ କରିଛ ମୁଁ ବି ସେମିତି ହେବି । ମୋତେ କିଏ ଅପମାନ ଦେବ ? କାହାରି କଥାକୁ ମୁଁ ଭ୍ରୂକ୍ଷେପ କରିବେନି । ତମରି ଭଳି ସବୁ ବିଷ ମୁଁ ପିଇଦେଇପାରିବି ।

ନୀଳକଣ୍ଠଙ୍କ ମୁହଁ ଉଜ୍ଜ୍ୱଳ ହୋଇଉଠିଲା । ସେ ନିଜର ଥରିଲା ହାତକୁ ଲାବଣ୍ୟର ମୁଣ୍ଡ ଉପରେ ରଖି କହିଲେ—ତୁ ଆୟୁଷ୍ମତୀ ହ ମା' । ତୁ ହିଁ ମୋର ଅପୂର୍ଣ୍ଣ ଇଚ୍ଛାକୁ ପୂରଣ କରିପାରିବୁ ।

ଏକୋଇଶାର ସମସ୍ତ ସରଞ୍ଜାମ ନେଇ ପ୍ରଥମେ ବଳଦଗାଡ଼ି—ତା'ପରେ ବସ୍‌ଯୋଗେ ଯାଇ ଲାବଣ୍ୟ କେତକୀ ଘରେ ପହଞ୍ଚିଲା । ଲାବଣ୍ୟ ଯିବାବେଳେ କନକକୁ କହିଗଲା—ଦି' ଦିନ ପାଇଁ ବାପାଙ୍କ ପାଖ ନ ଛାଡ଼ିବାକୁ ।

କେତକୀ ଘରେ ଲାବଣ୍ୟର ଉପସ୍ଥିତି ସମସ୍ତଙ୍କୁ ଅଡମାତ୍ରାରେ ଆନନ୍ଦିତ କରିଛି । ଆନନ୍ଦ ଦେଢ଼ଶାଶୁଙ୍କୁ ଯଥାବିଧି ସମ୍ମାନ ଜଣାଇବାରେ ହେଳା କରୁନାହିଁ । ଉମାଶଶୀ ଉଚ୍ଛ୍ୱସିତ ବଚନରେ ତାକୁ ଆଦର କରୁଛନ୍ତି । ସେ ସବୁଠାରୁ ବିଶିଷ୍ଟ ଅତିଥି ।

ଏକୋଇଶା ଉତ୍ସବ ପାଳନ କରିବାରେ ଉମାଶଶୀ ମୁକ୍ତହସ୍ତ ହୋଇ ପଡ଼ିଛନ୍ତି । ପ୍ରଥମ ନାତି—ସେ ଯେମିତି ସୌଭାଗ୍ୟର ଚରମସୀମାରେ ।

ଲାବଣ୍ୟ ଆନନ୍ଦ ସହିତ ବସି ସେ ଦିନ ଗଳ୍ପ କରୁଥିବାବେଳେ କହିଲା—ଆନନ୍ଦ ! ବାପା ଭାରି ଚାହାନ୍ତି କେତକୀକୁ ଆଉ ତା ପୁଅକୁ ଦେଖିବେ । କିଛି ଦିନ ପାଇଁ ତାକୁ ଆମ ଘରକୁ ପଠେଇଦିଅ !

ଆନନ୍ଦର ଆପତ୍ତି କରିବାର କିଛି ନାହିଁ । ଉମାଶଶୀ ମଧ୍ୟ ଆପତ୍ତି କଲେ-ନାହିଁ । ଖାଲି କହିଲେ—ମାସେ ପୂରିଯାଉ, ପଠେଇଦେବି ।

ଖୁବ୍ ଜାକଜମକରେ ଏକୋଇଶା ଶେଷହେଲା । ଲାବଣ୍ୟ ବିଦାୟ ନେଇ ଆସିଲା । ଆସିଲାବେଳେ କେତକୀକୁ ପଠାଇବା କଥା ପୁଣି ଥରେ ସମସ୍ତଙ୍କୁ ସ୍ମରଣ କରାଇଦେଲା ।

ହିମାଂଶୀ ଜବାବରେ ହେଳା କଲେ ନାହିଁ । ଠିକ୍ ମାସେ ପୂରିବା ପରେ ପତ୍ରେ ସେ କେତକୀକୁ ପଠାଇଦେଲେ । ଚିଠିରେ ଲେଖିଥିଲେ—ସମୃଦ୍ଧ ! ତମ କଥା ଅନୁସାରେ ବୋହୂକୁ ମାସକପାଇଁ ପଠେଇଲି । ମାସେ ପୂରିବା ପୂର୍ବରୁ ଯେମିତି ତାକୁ ଆଣି ଏଠି ଛାଡ଼ିଦେଇଯାଅ ।

କେତକୀ ଆସିବା ପରେ ତା ପିଲାର ଦାୟିତ୍ୱ ଲାବଣ୍ୟ ନେଇଛି । ସେ ବଡ଼—ଗୁରୁଜନ ହେଲେ ବି ଏ କ୍ଷେତ୍ରରେ କେତକୀ ହିଁ ତା'ଠୁ ବଡ଼ । କେତକୀ ଯେ ମା'—ଲାବଣ୍ୟ ବନ୍ଧ୍ୟା ।

ସତରେ ଦୀପୁ ଯେମିତି ତା' ନିଜ ପିଲା । ଦୀପ୍ତିକାନ୍ତକୁ ତା ବାପା ମା' 'ଦୀପୁ' ବୋଲି ଡାକିବା ଆରମ୍ଭ କରିଚନ୍ତି । ଦୀପୁର ସବୁ କାମ ଗୁହପୋଛାଠାରୁ ଦୁଧପିଆ ପର୍ଯ୍ୟନ୍ତ ଲାବଣ୍ୟ କରୁଛି ।

ଶ୍ରୀକାନ୍ତଠାରୁ ଚିଠି ଆସିଚି । ଏକାକିଆ ତାକୁ ଭାରି ଖରାପ ଲାଗୁଛି । ବାପାଙ୍କ ପାଖରେ କେତକୀକୁ କିଛି ଦିନ ଛାଡ଼ି ବା କନକ ଉପରେ ବାପାଙ୍କ ଦାୟିତ୍ୱ ଦେଇ ସେ କିଛି ଦିନ ପାଇଁ ଦିଲ୍ଲୀ ଯିବାକୁ ଲେଖିଚି ।

ଲାବଣ୍ୟ ମଧ୍ୟ ସେହିକଥା ଭାବୁଥିଲା । ସେ ଦିନ ବାପାଙ୍କୁ କହିଲା । ବାପା ଆଗ୍ରହରେ କହିଲେ—ମୋତେ ପଚାରୁଚୁ କ'ଣ ମା ? ତୋର ଯିବା ଉଚିତ । ଶ୍ରୀକାନ୍ତ ନ ଲେଖିଥିଲେ ବି ମୁଁ ତୋତେ କହିଥାନ୍ତି । କେତକୀ ତ ଅଛି । ତୁ କାଲି ଚାଲିଯା ।

ଦିଲ୍ଲୀ ଯିବା ଲାବଣ୍ୟର କର୍ତ୍ତବ୍ୟ । କିନ୍ତୁ ଏଇ କର୍ତ୍ତବ୍ୟ ସମ୍ପାଦନ କରିବାରେ ତାର ଯେମିତି ଆଗ୍ରହ କମିଆସିଛି । ଶ୍ରୀକାନ୍ତ ପାଖରେ ତାର ଆଉ ଆବଶ୍ୟକତା କଣ ?

କେତକୀ କହିଲା—ନାନି ! ତୁମେ ଆସିଲେ ଯାଇ ମୁଁ ଯିବି । ମୋ ଯିବା ଆଉ ପଚିଶଦିନ ରହିଲା ।

ଲାବଣ୍ୟ କହିଲା—ପଚିଶ ଦିନ । ଦିନ ଦଶଟା ରହି ମୁଁ ଫେରିଆସିବି । ତୁ ଆଦୌ ବ୍ୟସ୍ତ ହେବୁନାହିଁ । ଏକାକିଆ ହେଇଥିଲେ ତୋତେ ଖରାପ ଲାଗୁଥାନ୍ତା । ଏବେ ତ ଖେଳିବାକୁ ଜଣେଇଟେ ପାଇଗଲୁ—ଆଉ ଚିନ୍ତା କଣ ?

ଲାବଣ୍ୟ ଜାଣେ ଦୀପୁକୁ ଛାଡ଼ି କେତକୀ ବାପାଙ୍କର ସେବା କରିପାରିବ ନାହିଁ । କନକକୁ ମଧ୍ୟ ବାପାଙ୍କ ପାଖରେ ମାସେ ରହିବାର ବ୍ୟବସ୍ଥା କରିଗଲା ସେ ।

□□□

# ପନ୍ଦର

ଶ୍ରୀକାନ୍ତର ଭାରତବର୍ଷରେ ରହଣି ଶେଷ ହୋଇଆସୁଛି । ରହଣିକାଳ ବର୍ଷେ ବଢ଼ାଇବାପାଇଁ ସେ ଦରଖାସ୍ତ କରିଥିଲା, ମାତ୍ର ତାହା ନାମଞ୍ଜୁର ହୋଇଛି । ଏଥର ତାକୁ ଯିବାକୁ ପଡ଼ିପାରେ ସୁଦୂର ପ୍ରାଚ୍ୟ ଭୂଖଣ୍ଡକୁ ।

ଲାବଣୀ ପକ୍ଷରେ ଘୋର ଚିନ୍ତାର ବିଷୟ । ଶ୍ରୀକାନ୍ତ ଦିଲ୍ଲୀରେ ରହିଲେ ବା ସେ କିଛି କିଛି ଦିନ ଯାଇ ବାପାଙ୍କ ଦେଖାଶୁଣା କରିପାରନ୍ତା; କିନ୍ତୁ ସୁଦୂର ପ୍ରାଚ୍ୟକୁ ଗଲେ ଏହା ଏକଦମ ଅସମ୍ଭବ ହୋଇପଡ଼ିବ । ତାହାହେଲେ ସେ କ'ଣ କରିବ ?

ସ୍ୱାମୀ ସ୍ତ୍ରୀ ଉଭୟେ ସେହି ଚିନ୍ତା କରୁଛନ୍ତି । କୂଳକିନାରା କିଛି ମିଳୁନାହିଁ ।

ହାତରେ ଆଉ ସ୍ୱଳ୍ପମାତ୍ର ସମୟ ମାତ୍ର ।

ଲାବଣୀ କହିଲା—ମୁଁ ତ କିଛିଦିନ ପରେ ପୁଣି ବାପାଙ୍କ ପାଖକୁ ଯିବି । ତାଙ୍କ ସହିତ ଏ ବିଷୟରେ ପରାମର୍ଶ କରିବି । ତେବେ ତମକୁ ମୋର ଗୋଟେ କଥା କହିବାର ଅଛି ।

ଲାବଣୀର ମୁହଁକୁ ଚାହିଁ ଶ୍ରୀକାନ୍ତ ଆତଙ୍କିତ ହେଲା । ଏଥର ସେ ଆସିବାଠାରୁ ତାର କଥାବାର୍ତ୍ତା ଚାଲିଚଳଣରେ କିଛିଟା ଖାପଛଡ଼ା ଭାବ ଶ୍ରୀକାନ୍ତ ଲକ୍ଷ୍ୟ କରିଥିଲା । ତାର ମନେହେଉଥିଲା, ଲାବଣୀ ଯେମିତି କିଛି କହିବାକୁ ଚାହୁଁଛି, ମାତ୍ର କହିପାରୁନାହିଁ । ଶ୍ରୀକାନ୍ତ ମଧ୍ୟ ସାହସକରି କିଛି ପଚାରିପାରିନାହିଁ । ଯଦିଓ ଲାବଣୀ ଆଦର୍ଶ ଗୃହିଣୀ ଓ ସ୍ୱାମୀବତ୍ସଳା; କିନ୍ତୁ ଭାରି ଜିଦ୍‌ଖୋର । ସେ ଯାହା ବୁଝିଥାଏ ସେଇଟା ହିଁ ଚୂଡ଼ାନ୍ତ, ତାକୁ ବୁଝେଇବା କଷ୍ଟ । ସେ ଯାହା କରିବାକୁ ଚାହୁଁଥାଏ, ତାହା କରିବ ହିଁ କରିବ । ତାକୁ ସେଥିରୁ ନିବୃତ୍ତ କରିବା କଷ୍ଟକର; କିନ୍ତୁ ଅନ୍ତରଟା ତାର ଅନ୍ତଃସଲିଳା ଫଲ୍‌ଗୁ । ପ୍ରେମ ଦେଇ ଜାଣେ, ଆଉ ନେଇ ମଧ୍ୟ ଜାଣେ । ସେ ଏକ ମଧୁରବ୍ୟକ୍ତିତ୍ୱ । ତାର ଆକର୍ଷଣର ବନ୍ଧ ଖୁବ୍ ଶକ୍ତ । ସେ କ'ଣ କହିବ ସେଥିପାଇଁ ଶ୍ରୀକାନ୍ତ ଅପେକ୍ଷା କଲା । ଲାବଣୀ ପୁଣି କହିଲା—କ'ଣ କହିବାକୁ ଅନୁମତି ଦେଲନାହିଁ ଯେ ?

ଶ୍ରୀକାନ୍ତ ହସିଲା—ଅନୁମତି ? ମୋତେ କହିବା ପାଇଁ ଅନୁମତି ଦରକାର ?

—ଠିକ୍ ଅଛି ? କେତେଗୁଡ଼ିଏ କଥା ମୁଁ ତୁମକୁ ପଚାରିବି, ଶୁଣିବନି ।

ଏ ପ୍ରଶ୍ନ ବି ଅସ୍ୱାଭାବିକ । ବିବାହଠାରୁ ଏଯାବତ୍ ଶ୍ରୀକାନ୍ତ ଧନେ ବି ତ କୌଣସି କଥାରେ ରାଗ କରିନାହିଁ—ଆଜି ବା ରାଗିବ କାହିଁକି ? ଅଥବା ପ୍ରଶ୍ନ ଗୁରୁତର···

ଲବଣ୍ୟ କହିଲା—ଅନେକ ପାଠ ପଢ଼ିଛ । ଅନେକ ଦେଶ ବୁଲିଛ । ଅନେକ କଥା ଜାଣିଛ । ମୋତେ କହିଲ—ମୁଁ ସଂସାରରେ ଜନ୍ମ ହୋଇଥିଲି କାହିଁକି ?

ଏ ଏକ ବିଷମ ପ୍ରଶ୍ନ ! କି ଉତ୍ତର ଦେବ ଶ୍ରୀକାନ୍ତ ! କୌଣସି ମଣିଷର ଜୀବନ ଯେ ମୂଲ୍ୟହୀନ ନୁହେଁ, ସେ ଏହା ବୁଝାଇବାକୁ ଚେଷ୍ଟା କଲା ।

ଲବଣ୍ୟ କହିଲା—ମାନିଲି, ମୋ ଜୀବନ ମୂଲ୍ୟହୀନ ନୁହେଁ; କିନ୍ତୁ ତୁମ ପାଖରେ ମୋର ଆଉ ଆବଶ୍ୟକତା କଣ ? ମୁଁ ତ ତୁମ ବଂଶର ଭବିଷ୍ୟତକୁ ଅନ୍ଧାର କରିଛି । ତୁମ ବାପା ମା ମୁହଁ ଖୋଲି କିଛି କହୁନାହାନ୍ତି ସିନା, କିନ୍ତୁ ମୁଁ ତାଙ୍କ ମନର କଥା ବେଶ୍ ବୁଝିପାରିଛି । ମୁଁ ତ ଦେଖିଛି ମୋ ବାପା ମା' ପୁଅ ଅଭାବରେ କିପରି ମନସ୍ତାପ କରୁଥିଲେ, ଆଉ ଆଜି ବାପା ତାହାରି ଅଭାବରେ କି ଅବସ୍ଥା ଭୋଗକରୁଛନ୍ତି, ତାହା ତ ତୁମେ ଦେଖିଛ । ତୁମର ବୟସ ଅଛି, ସେ ଗୁଡ଼ା ଚିନ୍ତା କରୁନ; କିନ୍ତୁ ଯେତେବେଳେ ବୟସ ଖସିଯିବ, ତୁମେ କ'ଣ ସେଇ ଚିନ୍ତାରେ ଘାରିହବନି ? ସେତେବେଳକୁ ମୋର ରୂପଯୌବନ ଗଳିଯାଇଥିବ । ସେତେବେଳେ ଏ ଦୁର୍ଭାଗ୍ୟ ପାଇଁ ତୁମେ ମୋତେ କ'ଣ କ୍ଷମା ଦେଇପାରିବ ? ବରଂ ଅଭିଶାପ ଦେବ । ପରିବାରର ଶାନ୍ତି ଜଳିପୋଡ଼ି ପାଉଁଶ ହୋଇଯିବ । ମୁଁ ଆଜି ବେଶ୍ ଦେଖିପାରୁଛି ଭବିଷ୍ୟତର ସେଇ ବ୍ୟର୍ଥତା । ତା'ଠୁ ବରଂ···

ଶ୍ରୀକାନ୍ତ ଚିତ୍କାର କରିଉଠିଲା—ବନ୍ଦକର ଲବଣ୍ୟ, ଏସବୁ କ'ଣ କହୁଛ ? ତୁମେ କଣ ପାଗଳୀ ହୋଇଗଲ ? ଗାଁକୁ ଯାଇ ଏମିତି ବାଜେ ଚିନ୍ତା ଗୁଡ଼ା କରି ଫେରୁଛ । ଛି ଛି, ତମେ ଏଡ଼େ ବୁଦ୍ଧିମତୀ—ପୁଣି ଏଡ଼େ ଦୁର୍ବଳ ! ତମେ ହିଁ ଆଉ କେତେଥର ମୋତେ କହିଛ ସଂସାରକୁ ସାର୍ଥକ କରିବାକୁ ହେଲେ ନିଜର ସନ୍ତାନ ଥିବା କ'ଣ ଦରକାର ? ପୃଥିବୀରେ କ'ଣ ଲୋକ ସଂଖ୍ୟାର ଅଭାବ ଯେ ଆମେ ସନ୍ତାନ ଜନ୍ମକରି ଲୋକ ସଂଖ୍ୟା ଆହୁରି ବଢ଼ାଇବା ! ବରଂ ସନ୍ତାନ ଜନ୍ମ ନ କରିବାଦ୍ୱାରା ଆମେ ଦେଶର ଉପକାର କରିବା । ସମସ୍ତେ ଜନ୍ମ କଲେ ଜନସଂଖ୍ୟା କମିବ କେମିତି ?

ଲବଣ୍ୟ କହିଲା—ପାଞ୍ଚବର୍ଷ ଆଗରୁ ମୁଁ ଏସବୁ କହୁଥିଲି; କିନ୍ତୁ ଏଇ ପାଞ୍ଚ ବର୍ଷ ଭିତରେ ମୁଁ ଯାହାସବୁ ଦେଖିଲି, ଯାହାସବୁ ଅଙ୍ଗେ ନିଭେଇଲି, ସେଥିରୁ ବୁଝୁଛି ମୁଁ କହୁଥିବା ସେଇ ବଡ଼ ବଡ଼ କଥାଗୁଡ଼ାକ ଅର୍ଥହୀନ । ସ୍ତ୍ରୀ ହୋଇ ମୁଁ ଯଦି

ସନ୍ତାନ ଜନ୍ମ ନକରେ ଆମ ସମାଜ ମୋତେ କ୍ଷମାଦେବନାହିଁ । ଚିରଦିନ ଲାଗି ମୁଁ ଅପରାଧିନୀ ହୋଇ ରହିଯିବ ।

ଶ୍ରୀକାନ୍ତ କହିଲା—ନା, ଏ ଦେଶ ଛାଡ଼ି ମୋତେ ଶୀଘ୍ର ଚାଲିଯିବାର ବ୍ୟବସ୍ଥା କରିବାକୁ ହେବ । ତୁମ ମୁଣ୍ଡକୁ ଯେଉଁ ଭୂତ ଚାପିଛି ଏ ଦେଶରେ ତାର ଚିକିତ୍ସା ନାହିଁ । ସେଇ ବାହାରେ ରହିବା ଆମ ପକ୍ଷରେ ବେଶ୍ ।

—ବାପାଙ୍କୁ ମରଣ ମୁହଁକୁ ଠେଲିଦେଇ ମୁଁ ଯାଇପାରିବ ? ତୁମର ସ୍ୱାର୍ଥପାଇଁ ତୁମେ ଯିବା ମତେ ନେଇଯିବ, ହେଲେ···

କଥା ନ ସରୁଣୁ ଶ୍ରୀକାନ୍ତ କହିଲା—ନା ନା, ଏଥିରେ ମୋର କିଛି ସ୍ୱାର୍ଥ ନାହିଁ । ଯଦି କିଛି ଥାଏ ତାହା ତୁମକୁ ସୁସ୍ଥ ରଖିବାର ସ୍ୱାର୍ଥ ।

—ଶ୍ରୁଣ ! ମୋତେ ତୁମେ ଭୁଲିଯାଇପାରିବନି ? ଏତେ ଦିନ ପାଶ୍ଚାତ୍ୟ ଦେଶରେ ରହି କ'ଣ ଶିଖିଲ ? ଛାଡ଼ପତ୍ର···

ଉଃ—ଶ୍ରୀକାନ୍ତ ନିଜର ଦୁଇକାନକୁ ଦୁଇ ହାତରେ ବନ୍ଦ କରିଦେଲା—ଚାଲ ବୁଲିବାକୁ ଯିବା । ଏଠି ବସି ରହିଲେ ତମେ ଏଇ ପାଗଳାମି କରି ମୋତେ ବି ପାଗଳ କରିଦେବ ।

ଲାବଣ୍ୟ କହିଲା—ହଁ, ମୁଣ୍ଡଟା ମୋର କେମିତି କେମିତି ହୋଇଯାଉଛି । ଚାଲ, ଅଣ୍ଡା ପବନରେ ବୁଲିଆସିବା । ଗାଡ଼ି କାଢ଼, ଯମୁନା ବ୍ରିଜ୍ ଆଡ଼େ ଯିବା ।

ଯମୁନା ପୋଲ ପାଖରେ ଗାଡ଼ି ରଖି ଦୁହେଁ ପୋଲ ଉପରକୁ ଗଲେ । ଭଗ୍ନନଦୀ—ମନହର ପବନ । ଲାବଣ୍ୟ କହିଲା—ଧର, ମୁଁ ଯଦି ହଠାତ୍ ନଈ ଭିତରକୁ ଖସିପଡ଼ି ମରିଯାଏ···

ଶ୍ରୀକାନ୍ତ ବିରକ୍ତ ହୋଇ କହିଲା—ତମ ପଛେ ପଛେ ମୁଁ ବି ଡେଇଁପଡ଼ିବି ।

ଲାବଣ୍ୟ ସ୍ତମ୍ଭିତ ହେଲା । ଶ୍ରୀକାନ୍ତର ପାଦ ଧରି କହିଲା—ମତେ ତୁମେ କ୍ଷମା କର । ସତରେ ତୁମେ ମତେ ଏତେ ଭଲପାଅ ! ତୁମର ଏ ଭଲ ପାଇବାର ପ୍ରତିଦାନ ମୁଁ କଣ ଦେଇପାରିବ ?

ଶ୍ରୀକାନ୍ତ ତାକୁ ଉଠାଇଦେଇ କହିଲା—ପୋଲଟା ଉପରେ ପୁଣି ଏ କି ପାଗଳାମି ! ଚାଲ । ଗାଡ଼ିକୁ ଫେରିଯିବା ।

ସେମାନେ ଆସି ଗାଡ଼ିରେ ବସିଲେ ।

ଲାବଣ୍ୟ କହିଲା—ବାପା ଯେଉଁ କାମଗୁଡ଼ା ଅପୂର୍ଣ୍ଣ ରଖିଯାଉଛନ୍ତି ସେ ସବୁ କାମ ପୂର୍ଣ୍ଣକରିବ ବୋଲି ମୁଁ ତାଙ୍କୁ ପ୍ରତିଶ୍ରୁତି ଦେଇଛି । ଗୋଟିଏ ଦୁଇଟି ପୁଅ ଝିଅର ମା' ନହୋଇ ମୁଁ ଯଦି ଦେଶର ଅସଂଖ୍ୟ ପିତୃମାତୃହରା ସନ୍ତାନଙ୍କ ମୋ

କୋଳକୁ ଟାଣିନିଏ, ସେଥିରେ ତୁମେ କଣ ସୁଖୀ ହେବନି ? ତୁମେ ସାହସ ନଦେଲେ ମୁଁ ଆଗେଇବ କେମିତି ? ମୁଁ ବୁଝୁଚି ମୁଁ ନ ରହିଲେ ତୁମର ଘାର ଅସୁବିଧା ହେବ । ଭବିଷ୍ୟତ କପର ତାର ପ୍ରତିକାର ମୁଁ କରିବ···

—କଣ ପ୍ରତିକାର କରିବ ? ପଚାରିଲି ଶ୍ରୀକାନ୍ତ ।

—ବାପାଙ୍କ ସହିତ ପରାମର୍ଶ କରି କହିବ ।

—ପରାମର୍ଶ ନା ଚକ୍ରାନ୍ତ···ଚଡ଼ିଉଠିଲି ଶ୍ରୀକାନ୍ତ ।

ଲବଣ୍ୟ ଆଘାତ ପାଇଲା ।

ଚକ୍ରାନ୍ତ ?

ଏତେ ବଡ଼ ଅନ୍ୟାୟ ସେ କରିବ ? ବାପା କଣ ଖାଲି ତା'ର ମଙ୍ଗଳ ଚାହାନ୍ତି ? ଶ୍ରୀକାନ୍ତର ନୁହେଁ ? ନା ନା, ବାପାଙ୍କର ମନ ଏତେ ସଂକୀର୍ଣ୍ଣ ନୁହେଁ । ଶ୍ରୀକାନ୍ତ ସେ ତାଙ୍କର ସବୁଠୁ ପ୍ରିୟ !

ତାହାହେଲେ ଶ୍ରୀକାନ୍ତ ମନରେ ଏ ଧାରଣା ହେଲା କେମିତି ?

ମନକୁମନ ସେ କହିଲା—ନା ଗୋ, ତୁମେ ବାପାଙ୍କୁ ଦୋଷ ଦିଅନି । ଯଦି କିଛି ଦୋଷ ଥାଏ ସେ ସବୁ ମୋର ।

ପ୍ରକାଶ୍ୟରେ କହିଲା—ମୁଁ କଣ ସତରେ ତୁମକୁ ଛାଡ଼ି ଚାଲିଯିବାକୁ ଚାହେଁ ! ବାପାଙ୍କ ଅବସ୍ଥା ତ ଜାଣ, ଏ ଅବସ୍ଥାରେ କଣ କରିବା ତମେ କୁହ । ତମେ କିଛି ବାଟ ନ ବତାଇଲେ ମୋ ମନକୁ ଯାହା ଆସୁଛି ମୁଁ କହିଯାଉଛି । ଏ ବିଷୟରେ କଣ କରିବ ? ପୁଣି ବଂଶରକ୍ଷାର ଉପାୟ ? ତମେ ଧୀରସ୍ଥିର ଭାବରେ ଚିନ୍ତାକରି କୁହ । ତମ ମନ ପରୀକ୍ଷା କରିବାପାଇଁ ମୁଁ ଏସବୁ କହୁଥିଲି । ସତରେ ତୁମେ ରାଗିଲ ! କୁହ ରାଗିନାହ ବୋଲି···କୁହନା···

ପୁଣି ସେଇ ପ୍ରେମମୟୀ ନାରୀ । ଶ୍ରୀକାନ୍ତ ଶାନ୍ତ ହେଲା । ଲବଣ୍ୟର ମୁହଁକୁ ଚାହିଁ ତୃପ୍ତହେଲା । ମୁହଁରେ ଝଡ଼ର ସଂକେତ ନାହିଁ । ସ୍ୱାଭାବିକତା ଫେରି ଆସିଚି; କିନ୍ତୁ ଶ୍ରୀକାନ୍ତ ଚିନ୍ତା କରିବାକୁ ଆରମ୍ଭକରିଚି—ଏ ପରିସ୍ଥିତିରେ କଣ କରାଯାଇପାରିବ ।

ଗୋଲକଧନ୍ଦା ।

ଚିନ୍ତାର ବୁଢ଼ୀଆଣି ଜାଲ ।

ସେମାନେ ବସାକୁ ଫେରିଆସିଲେ ।

ଦୁହିଁ ଦୁହିଁ ଦଶଦିନ କଟିଗଲା । କେତକୀ ଚିଠି ଦେଇଛି—ନାନୀ, ତୁମେ କେବେ ଫେରୁଛ ? ତୁମେ ଆସିଲେ ମୁଁ ଯିବି ।

ଲବଣ୍ୟ ଭାବୁଥିଲା—ବାପାଙ୍କର ଗେଲ୍ହା ସାନଝିଅ । ବାପାଙ୍କର ଏ ଅବସ୍ଥାରେ ଯିବାପାଇଁ ଏତେ ବ୍ୟାକୁଳ ? ନା ସଂସାରଟା ଏଇଆ ! ଯଦି ସଂସାରଟା ଏଇଆ, ତେବେ ଭଗବାନ ବୋଧହୁଏ ଇଚ୍ଛାକରି ବଞ୍ଚିତ କରିଛନ୍ତି ଲବଣ୍ୟଙ୍କୁ ସନ୍ତାନବତୀ କରି-ନାହାନ୍ତି । ହୁଏତ ସେ ସନ୍ତାନବତୀ ହୋଇଥିଲେ ବାପାଙ୍କର ଯତ୍ନ ନେବାପାଇଁ କେହି ନଥାନ୍ତେ ! ହୁଏତ ଭଗବାନ ଚାହାନ୍ତି—ସେ ଝିଅ ହେଲେ ବି ପୁଅର ଦାୟିତ୍ୱ ତୁଲାଉ ।

ବାପାଙ୍କ ପାଖକୁ ଆସିବାକୁ ପୁଣି ସେ ପ୍ରସ୍ତୁତ ହେଲା । ଯଦିଓ ଶ୍ରୀକାନ୍ତ ଏ ସଂପର୍କରେ ଅବଗତ ଥିଲା, କିନ୍ତୁ ପ୍ରକୃତ ଯିବା ସମୟ ପହଞ୍ଚିବାରୁ ମୁହଁଟି ତାର ଥମ୍ ଥମ୍ ହୋଇଗଲା ।

ଲବଣ୍ୟ କହିଲା—ଯାଉଛି, ଶୀଘ୍ର ପୁଣି ଫେରିଆସିବି । ଚେଷ୍ଟାକରିବି ବାପାଙ୍କୁ କିଛିଦିନ ପାଇଁ ନେଇଆସିବାକୁ ; କିନ୍ତୁ ସେ ଯଦି ନ ଆସନ୍ତି, କଣକରିବି ତମେ ତ କିଛି କହନ । ଖବରଦେଇ ମତେ ଚିଠି ଲେଖିବ ।

ଲବଣ୍ୟ ଚାଲିଆସିବା ପରେ ଶ୍ରୀକାନ୍ତ ଘୋର ଚିନ୍ତାଗ୍ରସ୍ତ ହୋଇପଡ଼ିଛି । ଜୀବନରେ ସେ ଏତେ ଚିନ୍ତା କେବେ କରିନଥିଲା । ଲବଣ୍ୟ ତା ମନ ଭିତରେ ଝଡ଼ ସଂଚାର କରି ଚାଲିଗଲା ।

ଏ ଝଡ଼ର ଅବସାନ କେମିତି ଓ କେବେ ?

ସକାଳ ହେଲେ ଅଫିସର ଚିନ୍ତା । କର୍ମର ତାଡ଼ନା । ସନ୍ଧ୍ୟା ହେଲେ ନିଃସଙ୍ଗ ଜୀବନ । ରାତି ଆହୁରି ଭୟାବହ ।

ଲବଣ୍ୟ ବୋଧହୁଏ ସତ କହିଥିଲା—ବଳ ବୟସ ଥିଲାବେଳେ କେହି ସନ୍ତାନ ଚିନ୍ତା କରେନାହିଁ; କିନ୍ତୁ ବୟସ ବଢ଼ିବା ସଙ୍ଗେ ସଙ୍ଗେ ଏ ଚିନ୍ତା ମଣିଷକୁ ଗ୍ରାସକରେ । ରାତିରେ ସେ ସ୍ୱପ୍ନ ଦେଖେ । ଭାବେ—ଭାଗ୍ୟରେ କଣ ନାହିଁ ସନ୍ତାନର ଗୁରୁଣ୍ଡି ଗୁରୁଣ୍ଡି ଚାଲି ଦେଖିବା, ଗୁଲୁ ଗୁଲୁ ଭାଷା ଶୁଣିବା, ତାକୁ ଛାତିରେ ଜାକିଧରି ତା ମୁହଁରେ ଚୋକ ଦେବା, ଆଉ ତା ପାଟିରୁ 'ବାପା' ଡାକ ଶୁଣିବା ?

ଦୁର୍ବଳ ମଣିଷ । ମନ ତହୁଁ ଅଧିକ । ପିଲାଟିଏ ଦେଖିଲେ ଶ୍ରୀକାନ୍ତର ଇଚ୍ଛା ହେଉଛି ତାକୁ କୋଳେଇନେବ । ପାର୍କରେ ସନ୍ଧ୍ୟା ସମୟର ଭିଡ଼ । ଗ୍ରେଟ ଗ୍ରେଟ ପିଲାମାନଙ୍କର ମେରିଗୋ ରାଉଣ୍ଡରେ ଝୁଲିବାର ଦୃଶ୍ୟ । ସେ ଚାହିଁରହେ ତନ୍ମୟ ହୁଏ । ଆଉ ସେଇ ଯେଉଁ ଭିକାରୀ ବୁଢ଼ୀଟା ସାତଆଠ ବର୍ଷର ଛୁଆଟାକୁ ଧରି ତାଙ୍କ ଘରକୁ ଭିକ ମାଗିବାକୁ ଆସେ । ଆଜି ତାକୁ ଅନେକ ଆଦରକରି ଶ୍ରୀକାନ୍ତ ଖାଇବାକୁ ଦେଇଛି, ପାଉଁରୁଟି ବିସ୍କୁଟ ଟଫି ଅନେକ କିଛି । ଏସବୁ ଦେଖି ପିଲାଟା ପାଟିରୁ ଲାଳ ବହି ପଡ଼ୁଛି । ହୁଏତ ଜୀବନରେ ଖାଇ ନଥିଲା । ପିଲାଟାର ମୁହଁରେ ତୃପ୍ତି

ଦେଖି ସେ ନିଜେ ତୃପ୍ତ ହେଉଛି । ଯିବା ବାଟରେ ଯେଉଁଠି ପିଲାର ଫଟୋଟିଏ ଆଖିରେ ପଡ଼ୁଛି ତାକୁ ଚାହିଁ ସେ ଦଣ୍ଡେ ଠିଆହୋଇଯାଉଛି । ବାପା, ମା', ଶ୍ୱଶୁର ଶାଶୁ, ସ୍ତ୍ରୀମାନଙ୍କୁ ନେଇ ଗଠିତ ଯେଉଁ ସମାଜ, ସେ ସମାଜର ବେଷ୍ଟନରୁ ବାହାରି ଯିବା ଶ୍ରୀକାନ୍ତ ପକ୍ଷେ ସହଜସାଧ୍ୟ ନୁହେଁ ।

ଆଉ ଏଇ ସମାଜଟା କଣ ? କେତେକ ପରିବାରର ସମଷ୍ଟି ।

ଆଉ ଏଇ ପରିବାର ? ବାପା ମା ପୁଅ ଝିଅର ସଂସାର । ବିନା ପୁଅ ଝିଅରେ ପରିବାର କେଉଁଠି ସମ୍ଭବ ହେଉଛି ? ଜେଜେବାପାଙ୍କଠୁ ବାପା ଜନ୍ମିଲେ । ବାପାଙ୍କଠୁ ମୁଁ । ମୋଠାରୁ ମୋ ପୁଅ । ପୁଅଠୁ ନାତି । ନାତିରୁ ଅଣନାତି ପଣନାତି—ଏଇ କ୍ରମରେ ଅନେକ ପୁରୁଷ ।

ଘରଭିତରଟା ଶ୍ରୀକାନ୍ତକୁ ଖାଁ ଖାଁ ଚୋଡ଼ାଇଲା । ତାର ଆତ୍ମବିଶ୍ୱାସ ଦୋହଲିଗଲା । ସବୁ ଦମ୍ଭ, ସବୁ ସାହସ, ଶିକ୍ଷା-ଦୀକ୍ଷା, ଆଧୁନିକତା ମଉଳିଗଲା ଫୁଲ ଯେମିତି ମଉଳିଯାଏ । ହଜିଗଲା ଖରାଦିନରେ ନଈ ପାଣି ଯେମିତି ହଜିଯାଏ ।

ସେ ଚିତ୍କାର କରି ଉଠିଲା—ଭବିଷ୍ୟତ ?

ଗୋଟାଏ ଗାଡ଼ି ଆସି ବାହାରେ ଠିଆହେଲା । ଅର୍ଦ୍ଦଳୀ ଯାଇ ଖବର ଦେଲା—ସାର, ନିଖିଳବାବୁ ଆସିଛନ୍ତି । ଶ୍ରୀକାନ୍ତ ବୈଠକଖାନାକୁ ଆସି ଦେଖିଲା ଖାଲି ନିଖିଳ ବିଶ୍ୱାସ ନୁହେଁ ଶ୍ରୀମତୀ ବିଶ୍ୱାସ ମଧ୍ୟ ଆସିଛନ୍ତି । ଶ୍ରୀମତୀ ବିଶ୍ୱାସ ଭିତରକୁ ପଶିଆସୁଥିଲେ; ମାତ୍ର ଶ୍ରୀକାନ୍ତ ଜଣାଇଦେଲା ଯେ ସେ ନାହାନ୍ତି ।

ବୈଠକଖାନାରେ ସମସ୍ତେ ବସିଲେ ।

ନିଖିଳବାବୁ କହିଲେ—ମି: ମହାପାତ୍ର, କାଲି ଆମ ପୁଅର ଜନ୍ମଦିନ । ନିମନ୍ତ୍ରଣ କରିଗଲୁ । ନିଶ୍ଚୟ ଆସିବ ।

ଜନ୍ମଦିନ ନିମନ୍ତ୍ରଣ ପାଇଁ ଆଣିଥିବା ଚକ୍‌ଚକିଆ କାର୍ଡ଼ଟା ଭେନିଟିବେଗରୁ କାଢ଼ି ମିସେସ୍ ବିଶ୍ୱାସ ଶ୍ରୀକାନ୍ତ ହାତକୁ ବଢ଼ାଇଦେଲେ ।

ଶ୍ରୀ ବିଶ୍ୱାସ ଶ୍ରୀକାନ୍ତର ସହକର୍ମୀ, ବୟସରେ ଶ୍ରୀକାନ୍ତଠୁ ଦୁଇବର୍ଷ ସିନିୟର । ଇଣ୍ଡିୟାନ୍ ଏଡମିନିଷ୍ଟ୍ରେଟିଭ୍ ସର୍ଭିସର ଲୋକ ।

ଶ୍ରୀମତୀ ବିଶ୍ୱାସ ପଚାରିଲେ—ମିସେସ୍ କୁଆଡ଼େ ଯାଇଛନ୍ତି ?

—ଗାଁକୁ ।

—ଫେରିବେ କେବେ ?

—କାଲି ନୁହେଁ ।

—କାଲି ନୁହେଁ ? ବିଶ୍ୱାସ ଦମ୍ପତି ହସିଉଠିଲେ । ଶ୍ରୀମତୀ ବିଶ୍ୱାସ କହିଲେ—ତା ତ ନିଶ୍ଚୟ—ତେବେ କେତେ ଦିନେ ?

—ଶ୍ୱଶୁର ଅସୁସ୍ଥ । ଶାଶୁଙ୍କର କାଳ ହୋଇଯାଇଛି । ପାଖରେ ଆଉ କେହି ନାହାନ୍ତି । ତେଣୁ ଟିକଏ ଡେରି ହେବ ।

ଆହୁରି ଅନେକ ବନ୍ଧୁଙ୍କ ଘରକୁ ନିମନ୍ତ୍ରଣ କରିଯିବାକୁ ପଡ଼ିବ । ବିଶ୍ୱାସ ଦମ୍ପତି ଚାଲିଗଲେ । ଦେଇଯାଇଥିବା କାର୍ଡ଼ଟା ଟେବୁଲ ଉପରେ ଚକ୍‌ଚକ୍ କରୁଛି । ଶ୍ରୀକାନ୍ତ ସେଇଟାକୁ ଉଠେଇଆଣି ହାତରେ ଧରି ଏପାଖ ସେପାଖ ଦେଖିଲା । ପଢ଼ିଲା । ଦ୍ୱିତୀୟ ପୁତ୍ରର ଜନ୍ମଦିନ । ପୁଅର ବୟସ ପାଞ୍ଚ ।

• ଦୁଇ ପୁତ୍ର ବିଶିଷ୍ଟ ପରିବାର । ଦୁଖୀ ପରିବାର । ଶ୍ରୀକାନ୍ତ ଘର ସାମନା ବଗିଚାକୁ ଆସିଲା । ଫୁଲରେ ଭରିଯାଇଛି ଉଦ୍ୟାନ । ହଠାତ୍ ତା' ଆଖିରେ ପଡ଼ିଲା ସ୍ୱାସ୍ଥ୍ୟବିଭାଗ ଏହା ଭିତରେ ତା'ର କ୍ୱାର୍ଟର୍ ସାମନାରେ ପରିବାର ନିୟନ୍ତ୍ରଣର ଏକ ଫଳକ ଆଣି ପୋତି ଦେଇ ଯାଇଛନ୍ତି ।

କ୍ଷୁଦ୍ର ପରିବାର ସୁଖୀ ପରିବାର ।
ଏକ ପରେ ଏବେ ନୁହେଁ,
ଦୁଇ ପରେ କେବେ ନୁହେଁ ।

ବହୁ ସନ୍ତାନ ହେଲେ ପାରିବାରିକ ଶାନ୍ତି ନଷ୍ଟହୁଏ । ଆଉ ନିଃସନ୍ତାନ ହେଲେ ?

ଜୀବନ ବ୍ୟର୍ଥ ହୁଏ ।

ସେହି ବ୍ୟର୍ଥତା ହିଁ ଶ୍ରୀକାନ୍ତର ପ୍ରାଣ ଓ ମନକୁ ଗ୍ରାସକଲା ।

ସେହି ବ୍ୟର୍ଥତା-ରାକ୍ଷସ ବିକଟାଳ ହସ ହସି ଅଗେଇଆସୁଛି । ତାର ପଦ-ଧ୍ୱନି ପ୍ରଚଣ୍ଡ । ନିକଟରୁ ନିକଟତର ହେଉଛି ସେ ! ଶ୍ରୀକାନ୍ତର ବେକ ଚିପି ଦେବ । ଦେହର ରକ୍ତ ଶୋଷି ନେବ ।

ଆଶ୍ରୟପାଇଁ ସେ ଚତୁର୍ଦିଗକୁ ଚାହିଁଲା । କିଏ ତାକୁ ଆଶ୍ରୟ ଦେବ ?

ବାପା ମା ?

ନା, ସେମାନଙ୍କର ଦାୟିତ୍ୱ ଶେଷ ହୋଇଯାଇଛି ।

ଶ୍ୱଶୁର ଶାଶୁ ?

ସେମାନଙ୍କର ବି ।

ଆଉ ରହିଲା କିଏ ? ଲାବଣ୍ୟ ?

ଶ୍ରୀକାନ୍ତର ଅଶାନ୍ତ ଜୀବନରେ ଶାନ୍ତି ଆଣିଦେଇପାରିବ ?

ଅପୂର୍ଣ୍ଣ ଜୀବନରେ ପୂର୍ଣ୍ଣତା ଆଣିଦେଇପାରିବ ? □□□

# ଷୋହଳ

ଲାବଣ୍ୟର ମନରେ ଠିକ୍ ସେଇ ପ୍ରଶ୍ନ । ପୂର୍ଣ୍ଣତାର ସନ୍ଧାନ । ସେ ସୃଷ୍ଟି ନଥିଲା ନିଜ ଜୀବନର ପୂର୍ଣ୍ଣତା, କାରଣ ସେ ଜାଣିଚି ତାହା ଆଉ ହେବାର ନୁହେଁ । ତା ଜୀବନ ଯିନା ମରୁଭୂମି, କିନ୍ତୁ ଶ୍ରୀକାନ୍ତର ତ ଉର୍ବର ମାଟିକୁ ଶସ୍ୟଶ୍ୟାମଳା କରାଇବାର ଶକ୍ତି ରହିଛି । ମାଟି ଦୋଷରୁ ମଞ୍ଜିରୁ ଗଛ ହୁଏନା । ମାଟିକୁ ପାଲଟାଇଦେଲେ ସେଇ ମାଟିରେ କଲରା କାକୁଡ଼ିଠୁ ଆରମ୍ଭ କରି ରସାଳ, ଆତ, ଆମ୍ବ ପର୍ଯ୍ୟନ୍ତ ଫଳେ ।

ବାପା ସମ୍ପୂର୍ଣ୍ଣ ପଙ୍ଗୁ ଅବସ୍ଥାକୁ ଯାଉଛନ୍ତି । ଜନକର ଯିବା ସମସ୍ତ ଆଗତ । ଉମାଶଶୀ ଦୁଇଥର ଖବର ପଠାଇଲେଣି । କୋରାପୁଟରୁ ଆନନ୍ଦ ତିନଥର ଚିଠି ଦେଲଣି । କେତକୀ ଯିବ ।

ଏଇ ଯିବା ମୁହୂର୍ତ୍ତରେହିଁ ଅଶାନ୍ତି ସୃଷ୍ଟି ହେଲା । ଉମାଶଶୀ କୁଆଡ଼େ କେତକୀକୁ ଆସିବାବେଳେ କହିଥିଲେ—ଧୀପୁକୁ ନେଇ ଯାଉଛୁ । ଆସିବାବେଳେ ସୁନା ବଳା, ସୁନା ହାର ବାପକୁ କହି ଗଢ଼େଇ ଆଣିବୁ । ଏକୋଇଶ ଦବାଟା ତ ବର୍ଷ-ରକ୍ଷା; କିନ୍ତୁ ଏବେ ଯିନା ଦେଲେ ନାତି ପ୍ରତି ସ୍ନେହଟା ଜଣାପଡ଼ିବ ।

କେତକୀ ସେଦିନ ଏଇକଥା ଲାବଣ୍ୟ ଆଗରେ ପ୍ରକାଶ କଲା ଏବଂ କହିଲା —ବାପାଙ୍କୁ କହି ଏସବୁ କରେଇ ଆଣ ନାନୀ !

ଲାବଣ୍ୟର ମୁହଁରେ ବିରକ୍ତିର ସୂଚନା ।

—ତୁ ଏ କଣ କହୁଛୁ କେତକୀ ? ବାପାଙ୍କର ଅବସ୍ଥା ଜାଣି ବି ଝିଅହେଇ ତୁ ଏସବୁ କହିପାରୁଚୁ ? ଏ ଗହଣା ଧୀପୁ ପାଇଁ ଦରକାର ନା ତୋ ଶାଶୁ ପାଇଁ ଦରକାର ?

ହଠାତ୍ କେତକୀ ରୁକ୍ଷ ହୋଇଉଠିଲା । ୦

କହିଲା—ତମେ ତ ମା' ହେଇନ, ଜାଣିବ କେମିତି, ଶ୍ରେଷ୍ଠ ବୁଆମାନେ ଗହଣା ପିନ୍ଧନ୍ତି କି ନାହିଁ !

ଲାବଣ୍ୟର ମୁହଁ ଆକାଶରେ ଅନ୍ଧାର ଘୋଟିଗଲା । କେତକୀ ଏ କଥା ତାକୁ କହିପାରିଲା ? ସାରା ସଂସାରର ଅପମାନ ସେ ନୀରବରେ ସହିଯାଇଥିଲା; କାରଣ ସେମାନେ ସବୁ ପର । ନିଜ ମା ପେଟର ସାନ ଭଉଣୀ ତାର ବନ୍ଧ୍ୟାତ୍ୱ ଉପରେ ଟିପ୍ପଣୀ କଲା ! ଏ ଅପମାନଠୁ ମୃତ୍ୟୁ ବରଂ ଶତଗୁଣେ ଶ୍ରେୟସ୍କର । ଏଇଥିପାଇଁ କଣ

ସେ ସେଦିନ ତିରିଶ ହଜାର ଟଙ୍କା ବାପାଙ୍କ ହାତକୁ ବଢ଼େଇ ଦେଇଥିଲା ! ଏଇଥି-ପାଇଁ କଣ ସେଦିନ ସେ ବାପୁର ଏକୋଇଶାରେ ଖୁସିଆ ହୋଇଥିଲା ? କେତକୀ ସୁଖୀ ହେଉ—ଏ କାମନା ଛଡ଼ା ତାର ଆଉ ଦ୍ୱିତୀୟ କାମନା କିଛି ନଥିଲା; କିନ୍ତୁ ହେଲା କଣ ? ମଣିଷର କର୍ଣ୍ଣଗହ୍ୱର ମାଟିର ଭାଣ୍ଡ ଭଳି । ମାଟି ଭାଣ୍ଡ ଯେମିତି ଆଧାରିତ ଦ୍ରବ୍ୟଯୋଗୁ ତାର ନିଜତ୍ୱ ହରାଇ ବସେ, ଅର୍ଥାତ୍ ବିଷ ରହିଲେ ବିଷାକ୍ତ ଆଉ ମଧୁ ରହିଲେ ମଧୁର ହୁଏ, ଠିକ୍ ସେହିପରି କାନ ଭାଣ୍ଡରେ ବିଷାକ୍ତ କଥା ପ୍ରବେଶକଲେ ତାହା ବିଷାକ୍ତ ଓ ମଧୁର କଥା ପ୍ରବେଶ କଲେ ତାହା ମଧୁଯୁକ୍ତ ହୁଏ ।

କେତକୀର କାନକୁ ବିଷାକ୍ତ କରିଛି ସନାମା ବୁଢ଼ୀ । ସେ କେତକୀ କାନରେ ମନ୍ତ୍ର ଦେଇଛି ଯେ ଲବଣ୍ୟ ଯେ ଆସି ଏଠି ରହିଛି, ତା'ଭିତରେ ଗୂଢ଼ ରହସ୍ୟ ଅଛି । ବାପର ସେବା ମିଛ କଥା । ଅସଲ କଥା ହେଉଛି, ବାପଙ୍କ ସମ୍ପତ୍ତି ଉପରେ ତାର ଆଖି । କେତକୀ ଆଉ ତାର ପିଲାପିଲିଙ୍କି ବଞ୍ଚିତ କରି ସେ ସବୁ ସମ୍ପତ୍ତି ମାରିନେବ । ସନାମା ବୁଢ଼ୀର ଏଇ କଥାକୁ କେତକୀ ବିଶ୍ୱାସ କରିଛି । ତେଣୁ ତା ମୁହଁରେ ସମ୍ପ୍ରତି ହୋଇଚି ନାନା ପ୍ରତି କଟୁ ଭାଷା । ସତରେ କଣ ଲବଣ୍ୟ ବାପାଙ୍କ ସମ୍ପତ୍ତି ଲୋଭରେ ବାପୁକୁ ପୁନା ଗହଣାରୁ ବଞ୍ଚିତ କରିବାକୁ ଚାହୁଁଥିଲା !

ମା'ର କେତକୀକୁ ଉପଦେଶଗୁଡ଼ା କନକ ଶୁଣିଥିଲା ଏବଂ ନାନୀକୁ ତାର ଆଭାସ ମଧ୍ୟ ଦେଇଥିଲା । ନାନୀ ଆଖିର ଲୁହ ପୋଛିଦେଇ କହିଥିଲା—ଯିଏ ଯାହା କହିବ କହୁ, ନିଜେ ଠିକ୍ ଥିଲେ ଭୟ କରିବାର କ'ଣ ଅଛି ?

ଇତି ମଧ୍ୟରେ କେତକୀ ଓ କନକର ସମ୍ପର୍କରେ ମଧ୍ୟ ତିକ୍ତତା ଆସିଯାଇଛି । କଥା ଅତି ସାମାନ୍ୟ । ସେଦିନ ବାପୁକୁ ତଳେ ଶୁଆଇଦେଇ କେତକୀ ଉପର ଘରେ ବାପାଙ୍କ ପାଖରେ ଥିଲା । ବାପୁକୁ ଜଗିବାର ଦାୟିତ୍ୱ ଥିଲା କନକ ଉପରେ । କେତକୀ ବାପାଙ୍କ ପାଖରେ ବସି ବସି କେତେବେଳେ ଶୋଇପଡ଼ିଛି । କନକ ମା'ଠୁ ଡାକରା ପାଇ ଘରକୁ ଚାଲିଯାଇଛି । ଏହାରି ଭିତରେ ବାପୁ ଉଠିପଡ଼ି ପ୍ରବଳ କାନ୍ଦଣାରେ ଘର ଫଟେଇଛି । ବାପା ଡାକଦେଲେ—ଉଠ୍ ଲୋ ଝିଅ, ତୋ ପୁଅ ତେଣେ କାନ୍ଦି କାନ୍ଦି ନମ୍ବାନ୍ତ ହେଲାଣି ।

କେତକୀ ଧଡ଼ପଡ଼କରି ଉଠିଯାଇ ତଳକୁ ଧାଇଁ ଯାଇ କନକକୁ ନଥିବାର ଦେଖିଲା । ରାଗରେ ସାରା ଦେହଟା ତାର ପାଚି ଲାଲ୍ ହୋଇଗଲା । କିଛିକ୍ଷଣ ପରେ କନକ ଆସିବାରୁ ସେ ତାକୁ ମନ ଇଚ୍ଛା ଗାଳି ଦେଲା । ଯୋଉ ଭାଷା ସବୁ ପ୍ରୟୋଗ କଲା, ତାହା କନକର ମର୍ମକୁ ଛୁଇଁଲା ।

ସନ୍ତାନବତୀ ହେବା ପରେ କେତକୀ ହୋଇଛି ହିଂସ୍ର, ସ୍ୱାର୍ଥପର । ଲବଣ୍ୟ ତାକୁ ସନ୍ଦେହ କରିଚି । ନିଜ ହାତ ପଇସାରୁ ବାପୁପାଇଁ ଗହଣା ତିଆରି କରି କେତକୀକୁ ଶାଶୁଘରକୁ ପଠେଇଦେଇଛି ।

ଲାବଣ୍ୟ ଆଗରେ ପ୍ରଶସ୍ତ ସମସ୍ୟ । ଏଇ ସମୟକୁ ସେ ବିନିଯୋଗ କରିବ କେମିତି ଏବଂ ଏଇ ସମୟ ଯେମିତି ମଣିଷର ସବୁଠୁ ବଡ଼ ଶତ୍ରୁ ସେମିତି ବଡ଼ ମିତ୍ର ମଧ୍ୟ । ସମୟର ଅପବ୍ୟବହାର ଦ୍ୱାରା ମଣିଷର ଆୟୁଷ ଢଳ ଢଳ କ୍ଷୟ ହୁଏ । ସମୟର ସଦ୍‌ବ୍ୟବହାରଦ୍ୱାରା ମଣିଷ ହୁଏ ଚିରଞ୍ଜୀବ, ଆୟୁଷ୍ମାନ୍ । ଅପବ୍ୟବହାର ପଶୁତ୍ୱ ଆଣେ, ସଦ୍‌ବ୍ୟବହାର ଦେବତ୍ୱ ଆଣେ ।

ଯଦିଓ ସମୟ ହାତରେ ମଣିଷ ଏକ କ୍ରୀଡ଼ନକ, ତଥାପି ମଣିଷର ବୁଦ୍ଧିବୃତ୍ତି ସମୟ ପିଠରେ ଚାବୁକମାରି ତାକୁ ତାର ଇଚ୍ଛା ପଥରେ ଚଳେଇ ନେଇ ଯାଇପାରେ ।

ଲାବଣ୍ୟ ଆଗରେ ପ୍ରଶସ୍ତ ସମୟ । ସେ ସମୟର ସଦ୍‌ବ୍ୟବହାର କରିବାକୁ ଶିଖିଛି । ପ୍ରତ୍ୟହ ସକାଳେ ବାପାଙ୍କ ପାଖରେ ଘଣ୍ଟାଏ ବସି ତାଙ୍କ ଅତୀତ ଜୀବନର ଗଳ୍ପ ଶୁଣିବା, ଗାଁର ଯୁବକ ଯୁବତୀମାନଙ୍କୁ ଗାଁ ହିତରେ କର୍ମତତ୍ପର କରେଇବା, ବହି ପଢ଼ିବା, ଆଉ କନକକୁ ନିଜ ଆଦର୍ଶରେ ଗଢ଼ି ତୋଳିବା ତାର କାମ ହୋଇଚି । ତାରି ଚେଷ୍ଟାରେ ଦି ଫାଙ୍କ୍ ହୋଇଥିବା ଗାଁଟା ଏକ ହୋଇଗଲାଣି । ଏଥର ଦି'ଟା ରଜଯାତ୍ରା ନ ହୋଇ ଗୋଟିଏ ହେବାର ଆୟୋଜନ ହେଉଛି ।

ନୀଳକଣ୍ଠ କନ୍ୟାର କାର୍ଯ୍ୟକଳାପରେ ଆତ୍ମପ୍ରସାଦ ଅନୁଭବ କରୁଛନ୍ତି । ମନେ ମନେ ଆଶୀର୍ବାଦ କରୁଛନ୍ତି ।

କନକର ଘରେ ପୁଣି ଏକ ଝଡ଼ ଉଠିଚି । ତାର ବ୍ୟବହାରରେ ବାପ, ମା', ଭାଇ, ଭଉଣୀ ଅତିଷ୍ଠ । ଲାବଣ୍ୟ ସହିତ ତାର ସମ୍ପର୍କ ଓ ଯାଇ ବୁଲା ଅଭ୍ୟାସଟା ବାପ ମା' ପସନ୍ଦ କରୁନାହାନ୍ତି । ଏଇ ସମୟରେ କନକର ଶାଶୂ ଲୋକ ପଠାଇଥିଲେ ତାକୁ ନେଇଯିବା ପାଇଁ । କିଛି ଦିନ ହେବ ସେ ଅସୁସ୍ଥ ହୋଇପଡ଼ିଛନ୍ତି, ବୋହୂ କିଛି ଦିନ ପାଇଁ ଗଲେ ତାଙ୍କର ସେବା ଶୁଶ୍ରୂଷା କରିବ । ବାପ ମା ଖୁବ୍ ଆଗ୍ରହୀ ଥିଲେ ତାକୁ ପଠାଇଦବାପାଇଁ, ହେଲେ ସେ ରାଜି ହେଲା ନାହିଁ । ମା'କୁ ମୁହେଁ ମୁହେଁ କହିଲା—ମୁଁ ଯଦି ତୁମ ଉପରେ ବୋଝ ହୋଇଚି ବୋଲି ଭାବୁଚ, ମତେ ଆଉ ଥରେ ବାହା କରେଇ ଦଉନାହଁ । ସେଠି କିଏ ଅଛି ଯେ ସେଠିକି ମତେ ପଠଉଚ ?

ଝିଅ ମୁହଁରୁ ଏକଥା ଶୁଣି ମା' ବିସ୍ମୟରେ ଜିଭ କାମୁଡ଼ି ପକେଇଲା । କହିଲା—ହଇଲେ, ସେ ଘଇତାଛଡ଼ୀ ଟୋକୀ ତୋତେ କଣ କମିଆ କଲାଣି କି ? କପାଳରେ ତ ନାହିଁ—ପୁଣି ସୁହଁତ କାହିଁକି ? ତୋତେ କଣ ଲାଜ ସରମ ଛାଡ଼ିଗଲାଣି କି ?

କନକ ପାଲଟା ଜବାବ ଦେଇଥିଲା—ମତେ ଲାଜ ଛାଡ଼ିଯିବ କାହିଁକି, ତୋତେ ଛାଡ଼ିଗଲାଣି । ମତେ ଯାହା କହିଲୁ କହିଲୁ, ଲାବଣ୍ୟ ନାନୀକି କିଛି ଦୋଷ

ଦେଇପାରିବୁ ନି । କେତକାଙ୍କୁ ଶିଖେଇ ଯାହା କଲୁ ମୁଁ ଜାଣେ । ଘର ଭାଙ୍ଗିବା ପ୍ରକୃତି ତୋର । ତମେ ସବୁ ମଲେ ଯାଇ ଗାଁଟା ଉଶ୍ୱାସ ହବ ।

ସନାମା (କନକର ମା ମଧ୍ୟ) କହିଲା—ମୁଁ ମଲେ ଗାଁଟା ଉଶ୍ୱାସ ହବ ନାହିଁ ଯେ ତତେ ସୁବିଧା ହବ । ଛତରରେ ଖାଇବାକୁ ମନ ହେଲାଣି ନା । ଯା, ବାହାର ଏଠୁ...

କନକ ପାଟି କରି ଉଠିଲା—କୋଉଠିକି ଯିବି ?

—ଲବଣୀର ଘଇତା ପାଖରେ ଯାଉନୁ ରହିବୁ ।

—ଚୁପ୍‌କର୍ ମା' ! ଅରେ କହିଲ ଲବଣୀ ନାମ ନିଁ ଏଠି ଧରିବୁନି । ଆଉ ଥରେ ଯଦି କହୁ ତୋ ଅନ୍ତନାଡ଼ି ଫାଡ଼ିଦେବି ।

ଦାମୋଦର ଗାଁକୁ ଫେରି ମା' ଝିଅଙ୍କ ଲୀଳା ଦେଖି ସ୍ତ୍ରୀଙ୍କ ପକ୍ଷ ସମର୍ଥନ କରି କନକକୁ ଆହୁରି ଭର୍ତ୍ସନା କଲେ । ବିଚାରି କନକ ରାଗ ତମରେ ଧୁମ୍ ଧୁମ୍ ହୋଇ ଘରୁ ବାହାରିଗଲା । ଲବଣୀ ତାକୁ ଆଶ୍ରୟଦେଲା ।

ସେ ଦିନ ହଠାତ୍ ନୀଳକଣ୍ଠଙ୍କର ରକ୍ତଚାପ ବଢ଼ିଗଲା, ଯେତେବେଳେ ଦାମୋଦର ଆସି ଲବଣୀ ବିରୁଦ୍ଧରେ ନାଲିସ୍ କରି କହିଲେ ଯେ—ଲବଣୀ କନକକୁ ପୂରାପୂରି ନଷ୍ଟ କରିଦେଇ ସାରିଲାଣି । କନକ ମୁହଁରୁ ପାଣି ଗ୍ରାଡ଼ିଯାଇଛୁ । ସେ ତା ମା'କୁ କହିଲାଣି ଆଉଥରେ ବାହା ହବ ବୋଲି । ଲବଣୀକୁ ସାବଧାନ କର ନନା ! ସେ ଏ ଗାଁଟାକୁ ନଷ୍ଟ କରିଦବ । ତମ ମୁହଁ ପାଇ ସେ ଆଉ ଗାଁରେ କାହାକୁ ମାନୁନାହିଁ । ଆଉ ତା ମୁହଁ ପାଇ କନକ ଆଉ ଦଦନ ପରେ ଆମକୁ ପିଟିବ, ବ୍ୟଭିଚାରିଣୀହବ । ଘୋର କଳି । ଲବଣୀ ବିରୁଦ୍ଧରେ ଏଇ ପ୍ରଥମ ଅଭିଯୋଗ ନୀଳକଣ୍ଠ ଶୁଣିଲେ, ତାହା ପୁଣି ଦାମୋଦରଙ୍କଠାରୁ । ତାଙ୍କର ପ୍ରାଣ ନୈରାଶ୍ୟ ଜର୍ଜରିତ ହେଲା । ସତେ କି ସେ ଭାଙ୍ଗିପଡ଼ିବେ । ଯଦି ଗାଁରେ ଦୁଇଟା ଝିଅ ଆଗକୁ ବାହାରିଲେ ସେଥିରେ ଆନନ୍ଦିତ ନ ହୋଇ, ଗର୍ବିତ ନ ହୋଇ, ଦାମୋଦର ଏସବୁ କଣ କହିଗଲା ? ହେ ଭଗବାନ୍ ! ଏଇ ଅବହେଳିତ ଭୂଖଣ୍ଡର ଅଗ୍ରଗତି କେମିତି ସମ୍ଭବ ହେବ ? କିଏ କରିବ ? ଏଇଥିପାଇଁ ତୁମେ ତ ଆଉଥରେ ଅବତାର ଗ୍ରହଣ କରିବ ନାହିଁ । ତୁମର ଇଚ୍ଛା ଆମକୁ ହିଁ ପୂରଣ କରିବାକୁ ପଡ଼ିବ—କିନ୍ତୁ କପରି ? କାହାକୁ ନେଇ ? ଭାବି ଭାବି ତାଙ୍କର ରକ୍ତଚାପ ବଢ଼ିଗଲା ।

ସେ ଭାବୁଥିଲେ—କନକକୁ ଯଦି ଆଉଥରେ ବାହା କରିଦିଆଯାଏ କ୍ଷତିଟା କୋଉଠି ? ସେତେବେଳେ ତ ଏଇ ଦାମୋଦର ଏଥିପାଇଁ ରାଜି ହୋଇଥିଲା; କିନ୍ତୁ ବଡ଼ବାପାଙ୍କ ଯୋଗୁଁ ଏହା ସମ୍ଭବ ହେଲାନାହିଁ । ବଡ଼ବାପା ଆଜି ନାହାନ୍ତି । ସ୍ୱତଃପ୍ରବୃତ୍ତ ହୋଇ ଦାମୋଦର ଏ କାମଟାକୁ କରେଇଦବା କଥା । ତା' ନ କଲେ

ଓଲଟି ସେ ଆସି ଫେରାଦ ହେଉଛୁ । କେତେ ବିଚିତ୍ର ଏ ମଣିଷର ମନ ! ଆମେ ସଭ୍ୟ ନା ଅସଭ୍ୟ !

ନୀଳକଣ୍ଠଙ୍କ ଲାଗୁଥିଲା ଓଡ଼ିଶାର ଗାଁ'ଗଣ୍ଡା ଆଜି ବି ଯେମିତି ସେଇ ପ୍ରସ୍ତର ବା ଲୌହ ଯୁଗରେ ରହିଛି, ଆମର ଅନ୍ଧକାର କଟିନାହିଁ ।

ନୀଳକଣ୍ଠଙ୍କ ପ୍ରାଣରେ ପୁଣି ଆଘାତ ଲାଗିଛି । କେତକୀର ଶାଶୁ ଉମାଶଶୀ ଚିଠି ଦେଇଛନ୍ତି—

ସମୁଦ୍ର ! ତମ ବଡ଼ ଝିଅ ଲାବଣ୍ୟ ତମ ପାଖରେ ରହି ତୁମର ସବୁ ସମ୍ପତ୍ତି ଭୋଗ କରିବାର ଚକ୍ରାନ୍ତ କରୁଛି । ତୁମେ ଯେମିତି ଭୁଲି ନ ଯାଅ ସେ ତୁମର ଆଉ ଗୋଟିଏ ଝିଅ ଅଛି । ସେ ଝିଅ ମୋର ବୋହୂ, ମୋର ନାତିର ମା' । ତାର ବି ତୁମ ସମ୍ପତ୍ତିରେ ଭାଗ ଅଛି···ଇତ୍ୟାଦି ।

ନୀଳକଣ୍ଠ କାନ୍ଦିଲେ । ତାଙ୍କର ମୃତ୍ୟୁ ତ ଏ ଯାଏ ହୋଇନି । ତେବେ ତାଙ୍କର ସମ୍ପତ୍ତିକୁ ନେଇ ଆଜଠୁଁ ଏ ସବୁ ପ୍ରଶ୍ନ ଉଠୁଚି କାହିଁକି ?

ହାୟ ହାୟ, ଏ ପୃଥିବୀ କେତେ ଅବିଶ୍ୱାସୀ ! କେତେ ଅକୃତଜ୍ଞ !

ସମାଜସେବୀ ନୀଳକଣ୍ଠଙ୍କର ଆଜି ସବୁ ବିଶ୍ୱାସ ତୁଟିଯାଇଚି । ସବୁ ଆଶା-ନଦୀ ଶୁଖିଲା । ମନବଗିଚାର ଫୁଲଗଛରେ ଅସଂଖ୍ୟ ଝିଙ୍ଗଫୁଲର ସମାରୋହ । ଉଃ କି ବୀଭତ୍ସ ! କି ଭୟଙ୍କର ଏଇ ଦୃଶ୍ୟ ! ଏଇ ବାସ୍ତବ !

ତାଙ୍କର ଚେତା ବୁଡ଼ିଯାଉଛି ।

ଲାବଣ୍ୟ ପଲକହୀନ ନେତ୍ରରେ ଚାହିଁରହିଥିଲା । ବିପଦ ବେଳେ ସାହସ ଦରକାର । ଧୈର୍ଯ୍ୟ ଆବଶ୍ୟକ । ବାପାଙ୍କୁ ସଦର ହାସ୍‌ପାତାଲକୁ ନେଇଯିବା ଭଲ ।

ଆଉ ଗାଁରେ ପଞ୍ଚାୟତ ଅଫିସ । ହାଇସ୍କୁଲ । ପୋଷ୍ଟ ଅଫିସ । ଏବେ ପବ୍ଲିକ୍ କଲ୍ ଅଫିସ୍ ଖୋଲା ହୋଇଚି । ସେ ଯାଇ ଏମ୍ବୁଲେନ୍ସ ପାଇଁ ଫୋନ୍ କଲା । ଦୁଇଘଣ୍ଟା ଭିତରେ ଏମ୍ବୁଲେନସ ଗାଡ଼ି ଆସି ପହଞ୍ଚିଗଲା । ଲାବଣ୍ୟ ବାପାଙ୍କୁ ନେଇ ସଦର ହାସ୍‌ପାତାଲ୍‌ରେ ଭର୍ତ୍ତିକଲା । ସାଥିରେ କନକ ଯାଇଛି । ସେ ବର୍ତ୍ତମାନ ବୃନ୍ତଚ୍ୟୁତ ଫୁଲ—ନିଜ ପରିବାରରୁ ବିଚ୍ଛିନ୍ନ—ଲାବଣ୍ୟର ଆଶ୍ରୟ ପ୍ରାର୍ଥିନୀ ।

ହସ୍‌ପିଟାଲରେ ପହଞ୍ଚିବା ପରେ ପରେ ହିଁ ଅକ୍‌ସିଜେନ୍ ଦେବା ଦରକାର ପଡ଼ିଲା । ଚିକିତ୍ସାର ବ୍ୟବସ୍ଥା ହୋଇଯିବା ପରେ ଲାବଣ୍ୟ ଭାବିଲା—କେତକୀ ହୁଏତ ଏଇ ସହରରେ ଆଇପାରେ, ତାକୁ ଖବର ଦେଇ ଡକାଇବ । ଚିଠି ନେଇ କନକ ଗଲା; କିନ୍ତୁ ଗତକାଲି ସକାଳେ କେତକୀ ଆନନ୍ଦ ସହିତ କୋରାପୁଟ ଚାଲିଯାଇଛି । ଉମାଶଶୀ ସମୁଦ୍ରଙ୍କ ଅସୁସ୍ଥତା ଖବର ପାଇ ସଙ୍ଗେ ସଙ୍ଗେ

ହରମୋହନଙ୍କ ସହିତ ଡାକ୍ତରଖାନାକୁ ଆସିଲେ । ଡାକ୍ତରଖାନାରୁ ଫେରି ହରମୋହନ କଲେକ୍ଟରଙ୍କୁ ନୀଳକଣ୍ଠଙ୍କ ଗୁରୁତର ଅବସ୍ଥା କଥା ଜଣାଇଲେ । ସମୁଦ୍ଧ ବର୍ତ୍ତମାନ କିଛି ନ ଥାନ୍ତୁ, ଆଗେ ତ ଜଣେ ମନ୍ତ୍ରୀ ଥିଲେ; କଲେକ୍ଟର ଯଦି ସରକାରଙ୍କୁ ଜଣାଇ ଅଧିକ ଚିକିତ୍ସାର ବ୍ୟବସ୍ଥା କରିପାରନ୍ତି !

ଦୈବଯୋଗକୁ ସେଦିନ ଜଣେ ମନ୍ତ୍ରୀଙ୍କର ଗସ୍ତ ନିର୍ଘଣ୍ଟ ଥାଏ । ସେ ମନ୍ତ୍ରୀ ଜଣକ ନୀଳକଣ୍ଠଙ୍କ ପାଖରେ ସେତେବେଳେ ଉପମନ୍ତ୍ରୀ ଥିଲେ, ବର୍ତ୍ତମାନ ମନ୍ତ୍ରୀ ଏବଂ ଦଳର ଜଣେ ମୁଖ୍ୟ ନେତା । କଲେକ୍ଟରଙ୍କଠାରୁ ନୀଳକଣ୍ଠଙ୍କ ଅସୁସ୍ଥତାର ସମ୍ବାଦ ପାଇ ସେ ଡାକ୍ତରଖାନାକୁ ଯାଇ ତାଙ୍କୁ ଦେଖିଲେ । ଚିକିତ୍ସାରେ ତ୍ରୁଟି ନାହିଁ । ସନ୍ଧ୍ୟା ସରିକି ନୀଳକଣ୍ଠଙ୍କର ଚେତା ଫେରିଆସିଲା । ମନ୍ତ୍ରୀ ରାତିରେ ପୁଣି ଡାକ୍ତରଖାନାକୁ ଆସିଥିଲେ । ନୀଳକଣ୍ଠ ସେତେବେଳକୁ କଥାବାର୍ତ୍ତା କଲେଣି । ମନ୍ତ୍ରୀଙ୍କ ସହିତ କଥା ହେଲେ । ମନ୍ତ୍ରୀ ଲବଣ୍ୟକୁ ଆଗରୁ ଜାଣିଥିଲେ । ଲବଣ୍ୟର ବିବାହରେ ସେ ନିଜେ ତା ହାତରେ ମୁଦି ପିନ୍ଧାଇ ଦେଇଥିଲେ । ଲବଣ୍ୟକୁ ଦେଖି ସେ ଭାରି ଖୁସିହେଲେ । କହିଲେ—ତୁମ ବାପା ଥିଲେ ଜଣେ ଆଦର୍ଶ ନେତା । ତୁମେ ତାଙ୍କ ପଦାଙ୍କ ଅନୁସରଣ କର । ଛ' ମାସ ପରେ ନିର୍ବାଚନ ହେବ । ତୁମେ ଆଜିଠୁଁ ପ୍ରସ୍ତୁତ ହୁଅ, ନିର୍ବାଚନରେ ଠିଆହେବାପାଇଁ ।

ଏଇ ପ୍ରସ୍ତାବରେ ନୀଳକଣ୍ଠଙ୍କର ଆଖି ଉଜ୍ଜ୍ୱଳ ହୋଇଉଠିଲା । ସତରେ କ'ଣ ତାଙ୍କର ସ୍ୱପ୍ନ ଫଳବତୀ ହେବ ? ଧରାଧାମରୁ ବିଦାୟ ନେବାବେଳେ ସେ କଣ ଶାନ୍ତିରେ ଆଖି ବୁଜି ପାରିବେ ?

ସେ କହିଲେ—ବାବା ! ତୁମର ପ୍ରସ୍ତାବ ଉତ୍ତମ; କିନ୍ତୁ ତାକୁ କାର୍ଯ୍ୟକାରୀ କରେଇବା କଣ ଏଡ଼େ ସହଜ ! ଶ୍ରୀକାନ୍ତର ଭାରତବର୍ଷରେ ରହିଣି ଆଉ ଦୁଇମାସ । ତା'ପରେ ସେମାନେ ତ ବାହାରକୁ ଚାଲିଯିବେ !

ମନ୍ତ୍ରୀ କହିଲେ—ଶ୍ରୀକାନ୍ତବାବୁଙ୍କର ଏଥିରେ ଆପତ୍ତି କରିବା କଥା ନୁହେଁ । କାରଣ ଏହା ତାଙ୍କପାଇଁ ଏକ ସୁଯୋଗ । ଆପଣ ତ ଜାଣନ୍ତି ସାର୍, ଉପରକୁ ଉଠି-ବାକୁ ହେଲେ ଏଭଳି ସୁଯୋଗ ସବୁକୁ ଛାଡ଼ିବାର ନୁହେଁ । ଆପଣ ସମ୍ମତ ହେଲେ ମୁଁ ଶ୍ରୀକାନ୍ତବାବୁଙ୍କୁ ରାଜି କରେଇଦେବି । ଏଠୁ ଫେରି କାଲି ମୁଁ ଦିଲ୍ଲୀ ଯାଉଛି, ସେଠି ତାଙ୍କୁ ଦେଖାକରିବି ।

ନୀଳକଣ୍ଠ ଖୁବ୍ ଉଚ୍ଚରେ ନିଃଶ୍ୱାସ ନେଇ କହିଲେ—ମୋର ସମ୍ମତି ? ଲବଣ୍ୟ ବ୍ୟତୀତ ମୋର ଅପୂର୍ଣ୍ଣ ଆଶାକୁ ପୂରଣ କରିବ କିଏ ? ଅନେକ କାମ ବାକି ଅଛି । ମୁଁ ତାକୁ ସବୁଠୁଁ ବେଶି ଆଦରରେ ବଢ଼ାଇଥିଲି—ଭଲ ଜାଗାରେ ବାହା ଦେଇଥିଲି···

ନୀଳକଣ୍ଠଙ୍କର କଣ୍ଠ ରୁଦ୍ଧ ହୋଇଆସିଲା । ଜଣା ପଡ଼ୁଥିଲା ଆଖିରେ ତାଙ୍କର ଜମିଆସୁଚି ଜଳ । ସେ ମୁହଁ ବୁଲାଇନେଲେ ।

ମନ୍ତ୍ରୀ କହିଲେ—ମୁଁ ଜବାବ ଦେଉଚି ସାର୍, ଲାବଣ୍ୟକୁ ସବୁ ପ୍ରକାର ସାହାଯ୍ୟ କରି ଆପଣଙ୍କ ଋଣ ପରିଶୋଧ କରିବି । ପିଲାଦିନରୁ ବାପା ମା'ଙ୍କୁ ହରେଇ ପରିଣତ ଜୀବନରେ ଆପଣଙ୍କୁ ପାଇଥିଲି । ଆପଣ ମୋତେ ପିତାର ସ୍ନେହ ଦେଇ-ଥିଲେ । ଆପଣଙ୍କ ଶୁଭେଚ୍ଛା ନେଇ ମୁଁ ଜୀବନରେ ଏତେ ବାଟ ଆଗେଇ ଆସିଛି । ମୋର କର୍ତ୍ତବ୍ୟ ଲାବଣ୍ୟକୁ ସାହାଯ୍ୟ କରିବା ।

ନୀଳକଣ୍ଠ ନୀରବ ରହିଲେ । ଆଉ କ'ଣ ବା ତାଙ୍କର କହିବାର ଅଛି ? ଶ୍ରୀକାନ୍ତ ଯଦି ରାଜି ହୁଏ···ହୁଏତ ଲାବଣ୍ୟ ଶ୍ରୀକାନ୍ତକୁ ରାଜି କରେଇଦେବ—ଏ ବିଶ୍ୱାସ ତାଙ୍କର ଅଛି ।

ପାଞ୍ଚଦିନ ଭିତରେ ସମ୍ପୂର୍ଣ୍ଣ ସୁସ୍ଥହୋଇ ସେ ଗାଁକୁ ଫେରିଲେ । ଫେରିବା-ବେଳେ ଶ୍ରୀକାନ୍ତକୁ ଆସିବା ପାଇଁ ଟେଲିଗ୍ରାମ୍ କରି ଲାବଣ୍ୟ କନକକୁ ପଚାରିଥିଲା—ତୋ ମା' କଣ କହିଲେ କନକ ? ତୁ ମୋର ସହଚରୁଣୀ ହେବୁ ?

କନକ ଲାଜେଇଗଲା ।

ଏହା କଣ ସମ୍ଭବ ? ☐☐☐

## ସତର

ବଗିଚ୍ଚ ଫୁଲରେ ଭର୍ତ୍ତି ହୋଇଯାଇଚ । ଚମତ୍କାର ଦୃଶ୍ୟ ! ଅଗଣିତ ଫୁଟା ଫୁଲ ଦେଖିଲେ ଅକବ୍ଭର ପ୍ରାଣରେ ବ କବତ୍ଭର ସଞ୍ଚାର ହୁଏ । ଅରସିକ ରସିକ ପାଲଟିଯାଏ । ବରସ୍ଥ ପୁରୁଷ ଖୋଜେ ପ୍ରିୟାର ସାନ୍ନିଧ୍ୟ । ମହାକବ କାଳଦାସଙ୍କ ଯକ୍ଷ ଯଦ ସେଦନ ଆଷାଢ଼ର ପ୍ରଥମ ମେଘ ନଦେଖି ଏମିତ ଫୁଲଭର୍ତ୍ତି ଉଦ୍ୟାନ ଦେଖିଥାନ୍ତା ତାହାହେଲେ ପ୍ରତ୍ୟେକଟି ଫୁଲକୁ ସମ୍ଭାଷଣ କର କହିଥାନ୍ତା—ହେ ବସନ୍ତର ଚର ସହଚର, ଫୁଲବନ୍ଧୁ, ଭ୍ରମର ସୁବାସକୁ ପବନରେ ଭସେଇ ନେଇ ମୋ ପ୍ରିୟା ପାଖରେ ପହଞ୍ଚେଇ ଦଅ, ଆଉ କୁହ ତାର ବରହ ବେଦନା ମୁଁ ଆଉ ସହ ପାରୁ ନାହିଁ । ସେ ଶୀଘ୍ର ଆସୁ । ନୋହିଲେ କାଲି ପ୍ରଭାତରେ ଭ୍ରମ ସହତ ମୁଁ ବ ଝରି ପଡ଼ିବ । ଦେଖ, ତା ବହୁନେ ମୁଁ କେମିତ କ୍ଷୀଣ ହେଲିଣି ।

ଫୁଲମାନେ କଛୁ ଜବାବ ଦଅନ୍ତ ନାହିଁ । ଏଇ ଫୁଲଗୁଡ଼ାକ ଉପରକୁ ଯିନା ସୁନ୍ଦର, କନ୍ତୁ ଭତରେ ମଧୁହୀନ । ଜନସ୍ୟା, କସମସ୍, ବୋଗେନଭେଲିଆ, ଡାଲିଆ—ପ୍ରାଣହୀନ ସମସ୍ତି ।

ଖାଲି ଏଇ ଫୁଲ ନୁହଁ, ଶ୍ରୀକାନ୍ତ ଆଖିରେ ଆଜ ସବୁ କଛୁ ପ୍ରାଣହୀନ ।

କାଲି ରାତରେ ସେ ଲବଣ୍ୟକୁ ସ୍ୱପ୍ନ ଦେଖିଥିଲା । ଆରମ୍ଭରୁ ଏଯାଏଁ ସବୁ ଘଟଣା ସମ୍ବଳିତ ଏ ସ୍ୱପ୍ନ । ପ୍ରଥମ ରାତର ହର୍ଷୋଚ୍ଛଳ ପ୍ରାଣବନ୍ତ ମୁହୂର୍ତ୍ତ ଆଉ ଏଇ ସେଦନ ରାତର ଲୋତକସିକ୍ତ ସ୍ପନ୍ଦନହୀନ ଅମା ଅନ୍ଧକାର । ପ୍ରଥମ ରାତରେ ସେ ଥିଲା ବଳସ୍ୱିନୀ ନବାବ-ନନ୍ଦନୀ ଆଉ ଏଇ ସେଦନ ରାତରେ ସେ ପାଲଟି ଯାଇଥିଲା ବଷାଦମୁଖୀ ଲୁହର ଫୁଲ ।

, ଶ୍ରୀକାନ୍ତ ଭାବୁଥିଲା ତାର ଭବଷ୍ୟତ । ସୁଦୂର ପ୍ରାଚ୍ୟରେ ତାର ପୋଷ୍ଟିଂ ହୋଇସାରିଲାଣି । ଏଠି ଯିନା ସୁଖ ଦୁଃଖ, ହସ କାନ୍ଦ, ମିଳନ ବରହ ଭତରେ କଟି ଯାଉଥିଲା, କନ୍ତୁ ସେଠି··· ବରହର ଜ୍ୱାଳା ତାକୁ ପୋଡ଼ିଦେବନ ! ତେଜସ୍ୱୀ ସୂର୍ଯ୍ୟର ପ୍ରଖର କରଣରେ ଅନ୍ତଃପ୍ରବାହିତ ପ୍ରେମନଦୀର ଧାର ଶୁଖିଯିବନ ! ଯୌବନ ବଦାୟ ନେବ । ତା'ପରେ ସେ ଶୁଣିବ ବାର୍ଦ୍ଧକ୍ୟର କ୍ରୂର ପଦଧ୍ୱନ । ସେ ପଦଧ୍ୱନ କ୍ରମଶଃ ଅସ୍ପଷ୍ଟରୁ ସ୍ପଷ୍ଟ ହେବ । ଆକାର ହେବ ନବ୍ରକାର । ଜୀବନ-ପୁସ୍ତକର ଅବଶିଷ୍ଟ ପୃଷ୍ଠା-ଗୁଡ଼ାକ ଅକ୍ଷରବହୀନ ସାହାରର ବସ୍ତୀର୍ଣ୍ଣ ମରୁପ୍ରାନ୍ତରପର ସାଦା—ନିଷ୍ଫଳତାର ପ୍ରତୀକ ।

ସେ ଯଦ ଇନ୍ଦ୍ରଦ୍ୟୁମ୍ନ ହୋଇପାରନ୍ତା !

କିନ୍ତୁ ଇନ୍ଦ୍ରଦ୍ୟୁମ୍ନ ହେବାର ଗୌରବ ବା ତା'ର କାହିଁ ? ସେ କିପରି ପ୍ରାର୍ଥନା କରିବ—ହେ ଭଗବାନ ! ମୋ ବଂଶରେ ମୋର କେହି ଉତ୍ତରାଧିକାରୀ ନ ରହୁ ସେ' କି ଦାବି କରିବ...

ଅଟକିଯାଏ ତାର ଭାବନା । ଜଗନ୍ନାଥ ମନ୍ଦିର ନିର୍ମାଣର ଗୌରବ କ'ଣ ତାର ଅଛି ? କୀର୍ତ୍ତି, ଖ୍ୟାତି, ଯଶ କଣ ସେ ଅର୍ଜନ କରିଛି ? କାହାକୁ ନେଇ ସେ ଇନ୍ଦ୍ର-ଦ୍ୟୁମ୍ନ ପରି ଅମର ହେବ ?

ସେ ଯଦି ସଂସାରତ୍ୟାଗୀ ବୁଦ୍ଧଦେବ ହୋଇପାରନ୍ତା !

କିନ୍ତୁ ସେ ଜ୍ଞାନ ତାର କାହିଁ ? କାହିଁ ସେ ସାଧନା ? କାହିଁ ବା ସେ ମନର ବଳ ? ସେ ସାମାନ୍ୟ, ଅତି ସାମାନ୍ୟ ମନୁଷ୍ୟମାତ୍ର । ମହାପୁରୁଷ ଗାନ୍ଧିଜୀ କସ୍ତୁରବାଙ୍କ ସମ୍ମତିରେ ଯୌବନାବସ୍ଥାରୁ ହିଁ ବ୍ରହ୍ମଚର୍ଯ୍ୟ ପାଳନ କରିଥିଲେ । ଏଭଳି ଏକ ପ୍ରସ୍ତାବରେ ଲବଣ୍ୟ ହୁଏତ ରାଜି ହୋଇପାରେ; ମାତ୍ର ସେ ନିଜେ ନିଜକୁ ସଂଯତ କରି ରଖିପାରିବ ତ ? ଚତୁର୍ଦ୍ଦିଗରେ ଜୀବନର ଆକର୍ଷଣ...ସୌଦାଗରୀ ସଭ୍ୟତାର ଭେଳିକବାଜୀ ଭିତରେ ମଣିଷ ଏକ କ୍ରୀଡ଼ନକ, ପରମେଶ୍ୱର ଦାସ ।

କିଏ ନ ବୁଝିଚି ?

ପୁତ୍ରଟିଏ ଜନ୍ମ କରିବା ପରେ ତ ସିଦ୍ଧାର୍ଥ ବୁଦ୍ଧଦେବରେ ପରିଣତ ହେଲେ ! ଗାନ୍ଧିଜୀଙ୍କର କେତେ ପୁଅ ! ଭାଗବତର ସେଇ ଜଣାଶୁଣା ବାଣୀ—"ପୁତ୍ର ନିବେଶି ପତ୍ନୀ ପାଶେ, ଅଥବା ଚଳିବ ସନ୍ୟାସେ"...ଯୁଗ ଯୁଗ ପାଇଁ ଆମ ମନ ଭିତରେ ନାଚି-ଉଠୁଚି ।

ଶ୍ରୀକାନ୍ତ ସୁଦୂର ପ୍ରାଚ୍ୟକୁ ନିର୍ବାସିତ ହେବ । ହଁ, ନିର୍ବାସନ ନୁହେଁ ତ ଆଉ କଣ ? ବନ୍ଧୁ ବାନ୍ଧବ, ଜ୍ଞାତି କୁଟୁମ୍ବ, ଆତ୍ମୀୟ ସ୍ୱଜନ, ପୁତ୍ରକନ୍ୟା କିଏ ତା ସାଙ୍ଗରେ ଯିବେ ? କେହିନାହିଁ...ଆଲେକଜାଣ୍ଡାର ସେଲକାର୍କ ଭଳି ତାର ମନ ଆଜ ବିଦ୍ରୋହ କରିଉଠୁଚି । ପରିବାର ନାମକ ଯେଉଁ ସାମ୍ରାଜ୍ୟ, ଯାହାର ଅଧୀଶ୍ୱର ଶ୍ରୀକାନ୍ତ ମହାପାତ୍ର, ତାହା ଏକ ବସତିଶୂନ୍ୟ ସାମ୍ରାଜ୍ୟ ।

ତାର ମନପଟରେ ଭାସିଗଲା ପୁଣି ସେଇ ମୁହଁ...ସେଇ ଆଖି...ବକ୍ଷ, ନିତମ୍ବ...ସର୍ବଦେହ । ଲବଣ୍ୟ...

ଲବଣ୍ୟ ଟେଲିଗ୍ରାମ୍ କରିଚି । ଏଇ ଟେଲିଗ୍ରାମ୍ ହୋଇପଡ଼ିଚି ତା' ପକ୍ଷରେ ବିପଦ । ସେ ସଂଯତ ହେବାକୁ ଚେଷ୍ଟାକରୁଥିଲା । ପରିସ୍ଥିତି ସହିତ ନିଜକୁ ଖାପ ଖୁଆଇବାକୁ ବୁଝୁଥିଲା । ସେ ମନ ଭିତରେ ଅନେକ କସରତ କରୁଥିଲା, ତାର ଅତୀତକୁ ଭୁଲିଯିବାପାଇଁ । କିନ୍ତୁ ପାରିଲା କି ?

ସନ୍ତାନବତୀ ହେବା ପୂର୍ବରୁ ସୀତାଙ୍କୁ ଛଦ୍ମବେଶୀ ରାବଣ ହରଣକରି ନେଇଗଲା । ରାମଚନ୍ଦ୍ର ଅନେକ କାନ୍ଦିଲେ । ଗଛପତ୍ର ନଦୀ ପର୍ବତ ସମସ୍ତଙ୍କୁ

ପଡ଼ିଥିଲେ ସୀତାଙ୍କ ସମ୍ବାଦ । ଭୁଲି ପାରିଲେ ନାହିଁ ତ ! ତା'ପରେ ଯେଉଁ କାଣ୍ଡ ସବୁ ଘଟିଗଲା, ତାହା ରାମାୟଣର ଲଙ୍କାକାଣ୍ଡ ହିଁ କହିବ । ସୁନାର ଲଙ୍କା ଛାରଖାର ହୋଇ ପାଉଁଶ ହୋଇଗଲା । ସ୍ତ୍ରୀ ପାଇଁ···ସ୍ତ୍ରୀ ପାଇଁ ଇତିହାସ ପୃଷ୍ଠା କେତେଥର ରକ୍ତରଞ୍ଜିତ ନ ହୋଇଚି ! ହେଲେନ୍, ପଦ୍ମିନୀ, ପଦ୍ମାବତୀ ସବୁ ଆଜି ତାର ମନେ ପଡ଼ୁଥିଲେ । ପୁରୁଷର ସମସ୍ତ ସାଧନା ଏଇ ସ୍ତ୍ରୀକୁ କେନ୍ଦ୍ର କରି । ସ୍ତ୍ରୀ ପାଇଁ ଗଢ଼ି-ଉଠିଚି ପ୍ରେମର ସାମ୍ରାଜ୍ୟ, ପୁଣି ଏଇ ସ୍ତ୍ରୀ ପାଇଁ ଧୂଳିସାତ୍ ହୋଇଚି ସମୃଦ୍ଧିର ନଗରୀ ।

ସ୍ତ୍ରୀ, ସ୍ତ୍ରୀ, ସ୍ତ୍ରୀ !

ଲାବଣ୍ୟ, ଲାବଣ୍ୟ, ଲାବଣ୍ୟ !

ଟେଲିଗ୍ରାମ !

ତାର ବୟୋଜ୍ୟେଷ୍ଠ ବନ୍ଧୁ ମନ୍ତ୍ରୀ ଶ୍ରୀ ଅରବିନ୍ଦ ଦାସ ଆସି ପହଞ୍ଚିଚନ୍ତି । ଅପ୍ରତ୍ୟାଶିତ ଆଗମନ । ତାଙ୍କର ସମ୍ବର୍ଦ୍ଧନା ପାଇଁ ଶ୍ରୀକାନ୍ତ ବ୍ୟସ୍ତ ହୋଇଉଠିଲା ।

ସେ କହିଲେ—ବ୍ୟସ୍ତ ହୁଅନାହିଁ ଶ୍ରୀକାନ୍ତ ! ମୁଁ ଜାଣେ ତୁମ ସ୍ତ୍ରୀ ଏଠି ନାହାନ୍ତି । କିଛି ଆବଶ୍ୟକ ନାହିଁ । ତୁମ ସହିତ ଦୁଇପୂରିପଦ କଥା ହୋଇ ମୁଁ ଚାଲିଯିବି ।

କେବେ ତ ଆସନ୍ତିନାହିଁ, ଆଜି ଅପୂର୍ବ । ବାହାଘରବେଳେ ବାହାଘରର ସବୁ ଦାୟିତ୍ୱ ସେଇ ତ ବୁଝିଥିଲେ ! ଶ୍ୱଶୁର ନୀଳକଣ୍ଠଙ୍କର ଖୁବ୍ ଆଦରର ପାତ୍ର ! କି କାମରେ ଆସିଲେ ? ପୁଣି ହଠାତ୍···

ଖାଲି କଫି ବରାଦ କରି ଶ୍ରୀକାନ୍ତ ବସିଲା ।

ଅରବିନ୍ଦବାବୁ ଏଣୁ ତେଣୁ ଭଲମନ୍ଦ ଦି' କଥା ପଚାରି ଆସିବାର ଅସଲ ଉଦ୍ଦେଶ୍ୟ କହିଲେ ।

ଲାବଣ୍ୟ ନିର୍ବାଚନରେ ଠିଆହେବ ।

ଶ୍ରୀକାନ୍ତ ପ୍ରଥମେ ଏକଥା ଶୁଣି ଆଶ୍ଚର୍ଯ୍ୟ ହେଲା; କିନ୍ତୁ ଅସମ୍ମତ ହେବାର କୌଣସି କାରଣ ଖୋଜି ପାଇଲାନାହିଁ ।

ପ୍ରତ୍ୟେକଙ୍କ ପାଇଁ ଜୀବନର ଏକ ଅବଲମ୍ବନ ଆବଶ୍ୟକ । ସେ ଯିବା ଚାକିରି କରୁଛୁ, ଚାକିରି ହିଁ ତାର ଅବଲମ୍ବନ; ମାତ୍ର ଲାବଣ୍ୟ କାହାକୁ ନେଇ ବଞ୍ଚିବ ? ଯଦି ରାଜନୀତି ଭିତରେ ସେ ନିଜକୁ ପ୍ରତିଷ୍ଠା କରିପାରେ କ୍ଷତି କ'ଣ ହେବ ?

ହୁଏତ ସମାଜର କ୍ଷତି ନାହିଁ । ଶ୍ରୀକାନ୍ତ ପରିବାରର ? ପୁଣି ସେଇ ଅତ୍ମ ଆଚନ୍ତା ।

ଅରବିନ୍ଦବାବୁ କହିଲେ—ବୁଝିଲ ଶ୍ରୀକାନ୍ତ, ତୁମ ଶ୍ୱଶୁର ଥିଲେ ଏକ ଆଦର୍ଶ ମଣିଷ । ମୋଠାରେ ଥିଲା ତାଙ୍କର ଅଟଳ ବିଶ୍ୱାସ । ତାଙ୍କର ଭବିଷ୍ୟତ ସ୍ୱପ୍ନକୁ ଆମେ ତ କେହି ପୂରଣ କରିପାରିଲୁ ନାହିଁ । ଲାବଣ୍ୟ ଯଦି କରିପାରେ···

ଶ୍ରୀକାନ୍ତ ନୀରବ । ଏ ପ୍ରସ୍ତାବ ଅପ୍ରତ୍ୟାଶିତ ହେଲେହେଁ ଅପରିହାର୍ଯ୍ୟ ନୁହେଁ । ସ୍ୱାମୀ ହିସାବରେ ଦୁଃଖିନୀ ଲାବଣ୍ୟପାଇଁ ତାର କି ବା କର୍ତ୍ତବ୍ୟ ଅଛି ! ଏ ଯାଏ ଲାବଣ୍ୟକୁ ସେ କ'ଣ ଦେଇପାରିଛି ? ସମ୍ଭୋଗ ସୁଖରେ ଏକାଟିଆ ଲାବଣ୍ୟ କଣ ସୁଖୀ ହୋଇଛି ? ସେଥିରେ ତ ଶ୍ରୀକାନ୍ତର କି ସ୍ୱାର୍ଥ ଥିଲା । ଗତାନୁଗତିକ ରୁଟିନ୍ ବନ୍ଧା ଜୀବନ ଭିତରେ ତାର ଖାଇବା ପିଇବା, ଦେହପା, ସୁଖ ସ୍ୱାଚ୍ଛନ୍ଦ୍ୟପାଇଁ ଦିନର ଷୋଳ ଘଣ୍ଟା କଟିଯାଇଛି ଲାବଣ୍ୟର । ଯେଣୁ ସେ ଉପାର୍ଜନକ୍ଷମ ସ୍ୱାମୀ, ପ୍ରତ୍ୟକ୍ଷରେ ନହେଲେ ମଧ୍ୟ ପରୋକ୍ଷରେ ସ୍ୱାର୍ଥଜଡ଼ିତ ଅଧିକାରଗୁଡ଼ା ଲାବଣ୍ୟଠାରୁ କଡ଼ାକାନ୍ତି ହିସାବରେ ହାସଲ କରି ନେଇପାରିଛି । ତାକୁ ଅକୁଣ୍ଠିତ ଭାବରେ ସବୁ କିଛି ଦେଇଥିବା ସ୍ତ୍ରୀ ଯଦି ଆଜି ନିଜକୁ ପ୍ରତିଷ୍ଠା କରିବାକୁ ଚାହେଁ, ସେଥିରେ ଅନ୍ତରାୟ ସୃଷ୍ଟି କରିବା ତା'ର କଣ କର୍ତ୍ତବ୍ୟ ! ବୋଧହୁଏ ନା । ତେବେ ସେ ଆଜି ସ୍ୱଚ୍ଛ ମନରେ ଏକଥା କହି ପାରୁନି କାହିଁକି ? ସେଇ ରକ୍ଷଣଶୀଳତା···ପୁରୁଷ-ପ୍ରାଧାନ୍ୟ ସମାଜର ଗଣ୍ଡିଗାର—ହେ ସ୍ତ୍ରୀ ଜାତି, ତୁମେ ଯଦି ଏଇ ଗଣ୍ଡିଗାରକୁ ଡେଇଁ ବାହାରକୁ ଯିବ, ଅସୁବିଧାରେ ପଡ଼ିବ, ସୀତା ଯେମିତି ପଡ଼ିଥିଲେ; କିନ୍ତୁ ସୀତାଙ୍କର ଅବାଧ ଆଚରଣ ପାଇଁ ରାମଚନ୍ଦ୍ର ତାଙ୍କ ପ୍ରତି ବିରକ୍ତି ପ୍ରକାଶ କରିଥିବା ରାମାୟଣରେ ତ ନାହିଁ । ବରଂ ସୀତାଙ୍କର ସେ ଭୁଲପାଇଁ ରାମଚନ୍ଦ୍ର ହିଁ ଅକଥ୍ୟ କଷ୍ଟ ସ୍ୱୀକାରକରି ତାଙ୍କୁ ଉଦ୍ଧରି ଆଣିବାକୁ ଆଗେଇଯାଇଥିଲେ ।

ସୀତା ଭୁଲ କରିଥିଲେ । ଲାବଣ୍ୟ କ'ଣ ଭୁଲ୍ କରୁଛି ? ବୋଧହୁଏ ନା । ତଥାପି ସେ କହିପାରୁନି କାହିଁକି—ଲାବଣ୍ୟ ! ତୁମକୁ ମୁଁ ଅବାଧ ସ୍ୱାଧୀନତା ଦେଲି । ତୁମେ ଆଗେଇ ଯାଅ ! ସ୍ୱାମୀ ପ୍ରତି କର୍ତ୍ତବ୍ୟଠାରୁ ଦେଶପ୍ରତି କର୍ତ୍ତବ୍ୟ ଅଧିକ ମହାନ୍ । ତୁମେ ଯେଉଁ ପଥ ବାଛିନେବାକୁ ଯାଇଛ, ସେଇଟା ହିଁ ଠିକ୍ ପଥ । ସେଇ ପଥରେ ତୁମେ ଆଗେଇ ଯାଅ । ଗୋଟିଏ ସନ୍ତାନର ମା' ହୋଇପାରିନ, ସେ ଦୁଃଖରେ ଭାଙ୍ଗି ପଡ଼ନା । କୋଟିଏ ସନ୍ତାନର ମା' ହୁଅ ।

ଅନେକ ଭାବିଚିନ୍ତି ସେ ଅରବିନ୍ଦ ବାବୁଙ୍କୁ କହିଲା—ଯିବାପାଇଁ ଲାବଣ୍ୟ ଟେଲିଗ୍ରାମ୍ କରିଛି । କାଲି ମୁଁ ଯିବି । ତା ସହିତ ପରାମର୍ଶ କରିବା ପରେ ଯାହା ଠିକ୍ ହେବ ।

ଉପଯୁକ୍ତ ଉତ୍ତର । ଅରବିନ୍ଦବାବୁ ସନ୍ତୁଷ୍ଟ ହେଲେ । ପୂରାପୂରି ଅମତ ଥିଲେ ଶ୍ରୀକାନ୍ତ ତ ନା କହିଥାନ୍ତା । ସ୍ତ୍ରୀ ସହିତ ପରାମର୍ଶ ନକରି ସେ କହନ୍ତା ବା କପରି ?

ନନେ ଅରବିନ୍ଦବାବୁ କଣ ଏ ପରିସ୍ଥିତିରେ ଏକା ଏକା କିଛି କହିପାରିଥାନ୍ତେ ! ତେଣୁ ଶ୍ରୀକାନ୍ତର ଉତ୍ତରଟା ଅଧିକ ମାତ୍ରାରେ ଅସ୍ତି-ସୂଚକ ।

ଅରବିନ୍ଦବାବୁ ବିଦାୟ ନେଇଯିବା ପରେ ବି ଶ୍ରୀକାନ୍ତ ବୈଠକଖାନା ଘରେ ବସିରହିଥିଲା । ଦୈତ୍ୟ ଗତିରେ ଅତ୍ୟାଗ୍ରହରେ ଆଖି ତାର ବୁଜିଆସୁଥିଲା । ଗତ ନପାହୁଣୁ ତାକୁ ବିମାନବନ୍ଦରକୁ ଯିବାକୁ ପଡ଼ିବ । ସେ ପାଣି ଟେପ୍ ପାଖକୁ ଯାଇ ମୁହଁ ଧୋଇଲା । ମୁଣ୍ଡରେ ପାଣି ଦେଲା । ଭି. ଆଇ. ପି. ସୁଟ୍‌କେସ୍‌ରେ ଜିନିଷପତ୍ର ରଖିଲା । ଲାବଣ୍ୟର ଗହଣା ବାକ୍ସ ଖୋଲି ସବୁଯାକ ଗହଣା ସୁଟ୍‌କେସ୍‌ରେ ରଖିଲା । ସୁନ୍ଦର ପାଞ୍ଚ ଖଣ୍ଡ ଦାମିକା ଶାଢ଼ି ମଧ୍ୟ ନେବାକୁ ଭୁଲିଲାନାହିଁ । ଲାବଣ୍ୟର ଜିନିଷ ଲାବଣ୍ୟ ପାଖରେ ହିଁ ଏଣିକି ରହୁ ।

ଶ୍ରୀକାନ୍ତ ନିଜର ଅଲକ୍ଷ୍ୟରେ ଏସବୁ କରିଯାଉଥିଲା—ଯେମିତି ଲାବଣ୍ୟ ଉପରେ ତାର ଅଧିକାର ଆଜି ସଙ୍କୁଚିତ ହେବାକୁ ଯାଉଛି; ଯୁଗଯୁଗର ବନ୍ଧନ ଖଣ୍ଡିତ ହେବାକୁ ଯାଉଛି । ଆଉ ଏକ ନୂତନ ଜୀବନ ଆରମ୍ଭ ହେବାର ଉପକ୍ରମ । ସେ ସ୍ପଷ୍ଟଭାବରେ ଦେଖିପାରୁଛି ଭବିଷ୍ୟତର ନିଃଶବ୍ଦତା-ନିଃସଙ୍ଗତା-ନିଃସଙ୍ଗତା ।

କିଛି ଖାଇବାର ଇଚ୍ଛା ନଥିଲେ ବି ଚାକର ପିଲାର ଅନୁରୋଧରେ ସେ ଖାଇଲା । କାଲି ମଧ୍ୟାହ୍ନରେ ସେ ଭୁବନେଶ୍ୱର ଉଡ଼ାଜାହାଜ ପଡ଼ିଆରେ ଓହ୍ଲାଇବ । ତା'ପରେ ରଜନିକ ପାଇଁ ଯିବ କଟକ ବାପା-ମା'ଙ୍କ ପାଖକୁ । ତାପରେ ଶ୍ୱଶୁରଘର···ତାପରେ···

ନିଦ ମାଡ଼ିଆସିଲା । ଅଚୈତନ୍ୟ ପ୍ରହର । ରାତି ଗମ୍ଭୀରରୁ ଗମ୍ଭୀରତର ହେଲା । ଏଇଟା ହିଁ ଶାନ୍ତି । ଚିନ୍ତା ଭିତରୁ ପଳେଇ ଯିବାର ସୁଯୋଗ । ଶ୍ରୀକାନ୍ତ ଶୋଇପଡ଼ିଲା । □□□

# ଅଠର

ଏହା ମଧ୍ୟରେ ଦୁଇଦିନପାଇଁ ଶାଶୁଘରକୁ ଯାଇ ଲବଣ୍ୟ ଫେରିଆସିଛି । ଏଇ ଦୁଇଦିନ ନୀଳକଣ୍ଠଙ୍କର ଦାୟିତ୍ୱ ନେଇଛି କନକ । କନକର ସେବା-ଶୁଶ୍ରୂଷାର ଆନ୍ତରିକତା ଲବଣ୍ୟଠାରୁ କିଛି କମ୍ ନୁହେଁ । ନୀଳକଣ୍ଠ ଆଶ୍ଚର୍ଯ୍ୟ ହୁଅନ୍ତି । ଭାବନ୍ତି କନକ ଯଦି ତାଙ୍କ ନିଜ ଝିଅ ହୋଇଥାନ୍ତା; କିନ୍ତୁ ଦୁର୍ଭାଗ୍ୟ, କନକ ତାଙ୍କ ନିଜ ଝିଅ ନୁହେଁ । ବରଂ ସେ ଆସି ତାଙ୍କ ଘରେ ରହିବାଠାରୁ ଦାମୋଦର ଏ ପରିବାର ସହିତ ଆଉ କିଛି ସଂପର୍କ ରଖିନାହାନ୍ତି । ସନାମା' ଖଣ୍ଡୀ କନକ ପାଇଁ ଲବଣ୍ୟ ଉପରେ ସବୁ ଦୋଷ ଲଦି ସ୍ୱରିଆଡ଼େ କହିବୁଲୁଛି—ଲବଣ୍ୟ ପାଇଁ ତା ଝିଅ ଦୋଷ୍ଗିଣୀ ହେଲା । ପୁଣି ଯଦି ସେ ଫେରିଆସେ, ଆଉ ତାକୁ ଘରେ ପୂରେଇଦବ ନାହିଁ । ସେ ଧରି ନେଇଛି ସେ ମରିଯାଇଛି ବୋଲି । ଦୂରକୁ ଚାଲିଯାଇଥିଲେ ତ ଶାନ୍ତି ହୋଇ ଯାଆନ୍ତାଣି; କିନ୍ତୁ ଆଖି ଆଗରେ ଅଛି ଯେତେବେଳେ, ଏତେ ବଡ଼ କମିଂଟା ସେ କରି ପାରିନାହିଁ ।

ଲବଣ୍ୟର ଅନୁପସ୍ଥିତିରେ ନୀଳକଣ୍ଠ ସେଦିନ କନକକୁ କହୁଥିଲେ—"ମା', ଲବଣ୍ୟ କେବେ ଯିବ ତୋତେ କିଛି କହୁଛି ? ଶ୍ରୀକାନ୍ତର ବଦଳି ହବାର ସମୟ ଆସିଗଲାଣି । କାହିଁ କେତେ ଦୂରକୁ ସେ ଚାଲିଯିବ । ଲବଣ୍ୟକୁ ବି ତ ଯିବାକୁ ପଡ଼ିବ ।"

ନୀଳକଣ୍ଠ ଏତିକି କହି ଚୁପ୍ ରହିଲେ । କନକ ଟିକିଏ ପରେ କହିଲା—"ସେ କଥା ମୋତେ କିଛି ସେ କହିନି । କହୁଥିଲା ତ ଭଉଣୋଇଙ୍କୁ ଟେଲିଗ୍ରାମ୍ କରିଛି ଆସିବା ପାଇଁ । ଏହାରି ଭିତରେ ସେ ଆସିବେ ।"

"ହିଁ ଆସୁ, ଭଲ ହବ ମା' ! ହୁଏତ ଶ୍ରୀକାନ୍ତ ସହିତ ମୋର ହବ ଏଇଟା ଶେଷ ଦେଖା । ଭାରତ ବାହାରକୁ ଯିବା ମାନେ ପୁଣି ଆସିବାକୁ ଦୁଇବର୍ଷ । ଦୁଇବର୍ଷ ପର୍ଯ୍ୟନ୍ତ ମୋର ଆୟୁଷ କ'ଣ ଆଉ ଥିବ ?"

ଲବଣ୍ୟର ଭବିଷ୍ୟତ ନେଇ ଅରବିନ୍ଦବାବୁଙ୍କ ସହିତ ସେ ଦିନର କଥାବାର୍ତ୍ତା ଉପରେ ନୀଳକଣ୍ଠ ଆଉ ଗୁରୁତ୍ୱ ଦେଇନାହାନ୍ତି । ଦିଅନ୍ତେ ବା କିପରି ? ନିଜର ଝିଅକୁ କ୍ୱାଇଁଠାରୁ ଛଡ଼ାଇ ଆଣିବା ମସ୍ତବଡ଼ ସ୍ୱାର୍ଥପରତା ହେବ । ଶ୍ରୀକାନ୍ତ ଯଦି ନ କହେ—'ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ'—ଏହା ସମ୍ଭବ କିପରି ହେବ ?

ନା, ଲବଣ୍ୟ ଗ୍ଲୁଲିଯିବ । ତା'ର ଯିବା ଉଚିତ । ସେ ତ ବର୍ତ୍ତମାନ ଅକର୍ମ-ଶିଳାରେ ପରିଣତ ହୋଇଚନ୍ତି; କାହାରି କୌଣସି କାମରେ ଲଗିବା ଅବସ୍ଥାରେ ନାହାନ୍ତି । ତାଙ୍କପାଇଁ ଆଉ ଚିନ୍ତା କରିବାର କ'ଣ ଅଛି ? ଲବଣ୍ୟ ତାଙ୍କ କଥା ଆଉ ଚିନ୍ତା ନକରୁ—କେହି ନ କରନ୍ତୁ ।

ଆସିଛୁ ଏକଲା ଯିବୁରେ ଏକଲା
ସଙ୍ଗେ କେହି ଯିବେ ନାହିଁ,
ସଂସାରର ମାୟା ବିଷୟ ବାସନା
ଖାଲି ଦୁଇଦିନ ପାଇଁ ।

—ପ୍ରତ୍ୟହ ଏଇ ତ ତାଙ୍କର ଭଜନମାଳା । ସେ ଯିବେ । ଲବଣ୍ୟ କିନ୍ତୁ ତାଙ୍କୁ ଯିବାକୁ ଦେବନି । ବାଟ ଓଗାଳିବ । ଆଉ କହିବ—ବାପା, ମୋତେ ଛାଡ଼ି ତୁମେ କୋଉଠିକି ଯିବ ? ମୁଁ ଯଦି ଝିଅ ନ ହୋଇ ପୁଅ ହୋଇଥାନ୍ତି ! ବାରମ୍ବାର ଏକଥା ସେ କହିଚି, କହୁଚି ଆଉ କହିବ ।

ଶାଶୁଘରୁ ଲବଣ୍ୟ ଫେରିଆସି ଘରକରଣା ସଉଦାର ବିରାଟ ଏକ ତାଲିକା କରିଛି । ମନେହେଉଛି ବର୍ଷକର ସଉଦା ସେ କିଣିଆଣିବ ।

ଲବଣ୍ୟର କାରବାର ଦେଖି କନକ ସ୍ତମ୍ଭିତ । ନାନି ଗ୍ଲୁଲିଯିବା ପରେ ତାର କ'ଣ ହେବ ? ଯଦି ବି ବଡ଼ବାପାଙ୍କ ପାଖରେ ସେ ରହିଯାଏ, କେତେ ଦିନ ପାଇଁ ରହି ପାରିବ ? ତାଙ୍କ ପରେ କ'ଣ ହେବ ? କିଏ ହେବ ତାର ତତ୍ତ୍ୱାବଧାରକ ? ବାପଘର, ଶାଶୁଘର ଉଭୟକୂଳ ସେ ଛାଡ଼ିଚି । ଜୀବନତରଣୀ ତାର ଅସହାୟ ଅବସ୍ଥାରେ ଗ୍ଲସି-ଗ୍ଲୁଲିଚି ଅନିର୍ଦ୍ଦିଷ୍ଟ ପଥରେ । ଚନ୍ଦ୍ର-ତାରାବିହୀନ ଜୀବନ-ଆକାଶରେ ଘୋଟିଚି ଅମା ଅନ୍ଧକାର । ଅନେକ ଥର ସେ ଭାବିଚି ଆତ୍ମହତ୍ୟା କରିବ । କିନ୍ତୁ ପାରିନାହିଁ ।

ଲବଣ୍ୟ କହେ—କାହିଁକି ତୁ ଇମିତି ଭାବୁଚୁ ଲୋ କନକ ! ପିମ୍ପୁଡ଼ି ଭଳିଆ ପ୍ରାଣୀର ଆବଶ୍ୟକତା ବି ସୃଷ୍ଟିରେ ଅଛି । ଆମେ ତ ମଣିଷ ! କେତେ ଜନ୍ମର ପୁଣ୍ୟ ଫଳରେ ଆମେ ଏଇ ଜନ୍ମ ପାଇଚେ । ନିଜ ହାତରେ ତାକୁ ଶେଷ କରିଦେଲେ ସାତର ଜନ୍ମରେ ବି ଆଉ ମଣିଷ ଜନ୍ମ ପାଇବାନି । ଭଗବାନ ଆମମାନଙ୍କୁ ନେଇ କିଛି ନା କିଛି କାମ କରେଇବାର ମତଲବରେ ଥାନ୍ତି । ତେଣୁ ସାହସ ବାନ୍ଧି ମନକୁ ଦୃଢ଼କରି ସବୁ ସହିନେବା ଆମର କର୍ତ୍ତବ୍ୟ । ଭଗବାନ କାହାରିକୁ ସବୁଦିନ ପାଇଁ ସୁଖ ବା ସବୁଦିନପାଇଁ ଦୁଃଖ ଦେଇନଥାନ୍ତି । ସେଦିନ ପରା ତତେ ପଢ଼ି ଶୁଣେଇଥିଲି 'ଚକ୍ରବତ୍ ପରିବର୍ତ୍ତନ୍ତେ ସୁଖାନି ଚ ଦୁଃଖାନି ଚ ।'' ଦମ୍ଭ ଧରି ରହ । ନିଜ ଉପରେ ବିଶ୍ୱାସ ରଖ—ସବୁ ଠିକ୍ ହୋଇଯିବ ।

କନକ ଶୁଣିଯାଏ । କିଛି ବୁଝେ, କିଛି ବା ବୁଝିପାରେନା । ବେଳେ ବେଳେ ଭାବେ—ପରକୁ କହିବାଟା ସହଜ । ନିଜେ ଯଦି ଏଇ ଅବସ୍ଥାରେ ପଡ଼ିଥାନ୍ତେ···

ଲାବଣ୍ୟ କିନ୍ତୁ ଖାଲି କହିବାପାଇଁ କନକକୁ କହେନା । ଏଇ ଝିଅଟି ତା' ମନଭିତରେ ଛତର ସଂସ୍କାର ଭରିଛି । ଲାବଣ୍ୟ ଗମ୍ଭୀର ଭାବରେ ତା' କଥା ଭାବେ । କନକର ଏ ଅବସ୍ଥା ପାଇଁ ଦାୟୀ କିଏ ?

ଲକ୍ଷ୍ମୀହୀନ ପରିବାର !

ନିର୍ମମ ସମାଜ !

ଯୋଉ ସମାଜରେ ପଇଁତିରିଶ ବର୍ଷ ବୟସ୍କା ମା' ଅନ୍ତୁଡ଼ିଶାଳକୁ ଯାଏ, ଆଉ ଚଉଦ ବର୍ଷର ଝିଅ ବିଧବା ହୋଇ ବ୍ରହ୍ମଚାରିଣୀର ଜୀବନ ଯାପନ କରିବାକୁ ବାଧ୍ୟ ହୁଏ, ସେ ସମାଜ ସୁସ୍ଥ-ସମାଜ ନୁହେଁ—ରୋଗଗ୍ରସ୍ତ—ତାର ଚିକିତ୍ସା ଆବଶ୍ୟକ । ରକ୍ଷଣଶୀଳମାନଙ୍କର ଯୁଗ ଚାଲିଗଲାଣି । ନୂତନ ଯୁଗର ଆରମ୍ଭ ହୋଇଛି । ତାରି ବାପା ଏ ଯୁଗର ସ୍ୱପ୍ନ ଦେଖିଥିଲେ; କିନ୍ତୁ ସଫଳ କରିପାରି ନାହାନ୍ତି । ଆଜି ଦାୟିତ୍ୱ ଆସି ପଡ଼ିଛି ବାପ-ଜେଜାମାନଙ୍କର ପୁଅଝିଅମାନଙ୍କ ଉପରେ । ପୁରୁଣା ମୂଲ୍ୟବୋଧକୁ ବଦଳେଇ ନୂଆ ମୂଲ୍ୟବୋଧ ସୃଷ୍ଟି କରିବାକୁ ପଡ଼ିବ । ଆଉ ତାହା କରିବେ ଏଇ ଲାବଣ୍ୟ, କନକ ଓ ଏ ଗାଁ, ଏ ଦେଶର ଅଗଣିତ ଯୁବକ-ଯୁବତୀ ।

ନୂତନ ମୂଲ୍ୟବୋଧର ଅର୍ଥ ନୁହେଁ ନୂଆ ଫେସନ ପୋଷାକପତ୍ରରେ ଚାକଚକ୍ୟ—ଅଙ୍ଗସଜ୍ଜାରେ କାରୁକାର୍ଯ୍ୟ । ଚିନ୍ତାର ପରିବର୍ତ୍ତନ, ମନୁଷ୍ୟତ୍ୱର ବିକାଶ, ଅତିମାନବ ହେବାର ସାଧନା ହିଁ ନୂତନ ସଭ୍ୟତାର ମାପକାଠି । ଆମ ଜେଜେବାପା ଚୂନିଧାରୀ ବଟୁଆଧାରୀ ଥିଲେ । ଆମ ବାପା ପାନବଟା ବ୍ୟବହାର କଲେ । ଆମେ ବଟୁଆ ବଟା ଛାଡ଼ି ପାନକୁ କାଗଜରେ ମୋଡ଼ି ପକେଟରେ ରଖି ଖାଇଲୁ । ଆମ ପୁଅ-ନାତି ପାନ ଛାଡ଼ି ସିଗାରେଟ୍ ଧରିଲେ । ଏଇ କଣ ସଭ୍ୟତାର କ୍ରମବିକାଶ ? ନା ।

ପାଦରୁ ବଳଦଗାଡ଼ି, ବଳଦ ଗାଡ଼ିରୁ ମଟର, ରେଲ୍, ଉଡ଼ାଜାହାଜ, ରକେଟ୍ ମଧ୍ୟ ଦେଇ ବିଜ୍ଞାନ ଆଗେଇ ଚାଲିଛି । ତା ସହିତ ମଣିଷର ବୁଦ୍ଧି ବୃତ୍ତି, ସଦ୍‌ଗୁଣ, ମାନବିକତାର ବିକାଶ ଘଟିବା ଆବଶ୍ୟକ । ଆମପାଇଁ ସମାଜ, ସମାଜ ପାଇଁ ଆମେ, ଏହି ଚିନ୍ତା ହିଁ ଆଧୁନିକତା । ଦୁଃଖରେ ସମସ୍ତେ ଭାଗୀ, ସୁଖରେ ସମସ୍ତେ ଭାଗୀ, ଏଇଟା ହିଁ ମନୁଷ୍ୟତ୍ୱ ।

କନକର ଦୁଃଖଟା ଲାବଣ୍ୟର, ଲାବଣ୍ୟର ସୁଖଟା କନକର । ନୂତନ ଯୁଗ ହିଁ ସୁବର୍ଣ୍ଣ-ଯୁଗ । ସେଇ ଆଲୋକ-ଲଗ୍ନ ଉପସ୍ଥିତ ।

ତାହାକୁ ସ୍ୱାଗତ କରିବାପାଇଁ ଲାବଣ୍ୟ ଅସ୍ଥିର ।

କନକ କହିଲା—ନାନୀ ! ତୁମେ ତ ବର୍ଷକପାଇଁ ଜନକପକ କଣାକଣି କଲଣି । ବଡ଼ବାପାଙ୍କ ବ୍ୟବସ୍ଥା କରି ଯାଇଥିବ । ହେଲେ ମୁଁ କଣ କରିବ ?

ଲାବଣ୍ୟ ଦେଖିଲା କନକର ଆଖିରେ ଲୁହ । ସେ କହିଲା—ଖାଲି ବାପାଙ୍କ ବ୍ୟବସ୍ଥା ନୁହେଁ, ତୋ ବ୍ୟବସ୍ଥା ବି ମୁଁ କରିବି । ତୁ ଯା, ଦୋତାଲା ଉପରେ ମୋର ଘରଟାକୁ ସଜେଇଦେବୁ । ଟେଲିଗ୍ରାମ୍ କରିଚି, ଆଜକାଲି ଭିତରେ ସେ ନିଶ୍ଚୟ ଆସି ପହଞ୍ଚିବେ । ଘରଟା ଯାହା ହୋଇଚି ନା···

କନକ ଭାବିଲା ନାନୀ ତାକୁ ଭୁଲେଇଦେବା ପାଇଁ କାମ ଆଳରେ ଉପରକୁ ପଠାଇଦେଉଚି । ଏଇକ୍ଷିଣି ସମୟ ଅଛି ବୋଲି ତା ସାଙ୍ଗରେ କଥାବାର୍ତ୍ତା କରୁଚି । ସେ ଆସିଗଲା ପରେ ନାନୀକୁ ଆଉ କଣ ବେଳ ମିଳିବ କଥାବାର୍ତ୍ତା କରିବା ପାଇଁ ?

ହଁ, ସେ ଆସିଗଲା ପରେ···

କନକ ମନରେ ବିହ୍ୱଳତା । କେଉଁ ଏକ ଅନାସ୍ୱାଦିତ ଆନନ୍ଦରେ ସେ ନିଜେ ଯେମିତି ଅଭିଭୂତ ହୋଇପଡ଼ିଲା । ପୁଣି ପରମୂହୂର୍ତ୍ତରେ ନିଜ ମନକୁ ମନ ଭାବିଲା—ତା ପକ୍ଷରେ ଏସବୁ ଚିନ୍ତା କରିବା ଅନ୍ୟାୟ ।

ଉପରକୁ ଯାଇ ସେ ଘର ସଜେଇଲା । ବିଛଣା କଲା । କାନ୍ଥ, ଝରକା, କବାଟ ଝାଡ଼ିଲା । ଟେବୁଲ ଉପରେ ଫୁଲଦାନି, ଧୂପଦାନି ରଖିଲା । ବହି ସେଲ୍‌ଫରେ ବହି ସଜାଡ଼ିଦେଲା ।

କାନ୍ଥରେ ଟଙ୍ଗାହୋଇଚି ଶ୍ରୀକାନ୍ତ ଆଉ ଲାବଣ୍ୟର ବିବାହକାଳୀନ ଫଟୋ । ସେ ଘଡ଼ିଏ ଚାହିଁରହିଲା । ଦେହର ରଙ୍ଗ କଳା ହେଲେ ବି ଫଟୋଟା ଖୁବ୍ ସୁନ୍ଦର । ଇସ୍ ! କି ସୁନ୍ଦର ଯୋଡ଼ି ! ତାର ଲୋଭ ହେଲା । ସେ ଆଖି ବନ୍ଦ କରିଦେଲା । ଭଣୋଇ କେଡ଼େ ସୁନ୍ଦର ଦିଶୁଛନ୍ତି ! ନା-ନା, ତାର ଭୁଲ ହୋଇଗଲା । ସେ ପର-ପୁରୁଷ ! ନାନୀର ସମ୍ପତ୍ତି ! ନାନୀ ଭାଗ୍ୟବନ୍ତୀ !

କନକ ଏଠିକି ଆସିବା ପରଠୁ ଏଇ ଘରେ ଲାବଣ୍ୟ ପାଖରେ ଶୋଉଛି । କେତେ ଦିନ ଆଉ ଶୋଇବ ? ଭଣୋଇ ଯଦି ଆଜି ବା କାଲି ପହଞ୍ଚନ୍ତି ସେ ତ ଶେଯକୁ ଦଖଲ କରିବେ । କନକ ହେବ ବେଦଖଲ । ତା'ପରେ ସେ ନେଇଯିବେ ନାନୀକୁ । କନକ ରହିବ ଏକା···ବିରାଟ ଶୂନ୍ୟତା ଭିତରେ ଏକା ଏକା ତାର ଜୀବନ କଟିବ ।

ଲାବଣ୍ୟର ଡାକରେ ସେ ପୁଣି ତଳକୁ ଆସିଲା । ମନ ବିଚଳିତ । ସର୍ବାଙ୍ଗରେ କମ୍ପନ ।

ଲାବଣ୍ୟ ତାକୁ ଦେଖି କହିଲା—ତୁ ଭାରି ସୁନ୍ଦର ଦିଶୁଚୁ କନକ ! ସତରେ ତୁ ସୁନା ! ତୋତେ ଦେଖି ମୋର ଭାରି ଲୋଭ ହଉଚି ।

ନାମୀ ପୁରୁଷ ନୁହେଁ, ସ୍ତ୍ରୀ । ତଥାପି କନକ ଲଜ୍ଜେଇଗଲା ।

ଲାବଣ୍ୟ ପୁଣି କହିଲା—ଇମିତି ରୂପ କରି ତାଙ୍କ ଆଗକୁ ବାହାରିବୁନି ଲୋ, ସେ ଲୋଭେଇଯିବେ ।

ରକ୍ଷା ହୋଇଛି, ନାମୀର ଲୋଭଟା ଭଣ୍ଡୋଇଙ୍କ ହସ୍ତାନ୍ତରିତ ହୋଇଯାଇଛି । କନକ ଆଶ୍ୱସ୍ତିର ନିଃଶ୍ୱାସ ମାରିଲା । କିଛି ସମୟପାଇଁ ମନଟା ସତେଜ ହେଲା; କିନ୍ତୁ ପରକ୍ଷଣରେ ସେ ଭାବିଲା—ଆକାଶ-କୁସୁମକୁ ଲୋଭ କରିବାରେ ଲାଭ କଣ ? ତାର ସେ ଭାଗ୍ୟ କାହିଁ ?

ହଠାତ୍ ନୀଳକଣ୍ଠ ଚିତ୍କାର କରି ଉଠିଲେ—କିଏ କୋଉଠି ଅଛ ଧାଇଁଆସ ! ଚୋର ଚୋର । ସେ ଚୋରି କରିନବାକୁ ଆସୁଛି ।

ଲାବଣ୍ୟ ଧାଇଁଗଲା—କଣ ହେଲା ବାପା ? ନୀଳକଣ୍ଠ କହିଲେ—କିଛି ନାହିଁ ମା', ଗୋଟାଏ ଦୁଃସ୍ୱପ୍ନ ଦେଖୁଥିଲି । ଶ୍ରୀକାନ୍ତ କେବେ ଆସିବ ମା' ?

ଲାବଣ୍ୟ କହିଲା—ଟେଲିଗ୍ରାମ୍ ତ କରିଛି । ଆଜିକାଲି ଭିତରେ ପହଞ୍ଚିବେ ବୋଲି ଭାବୁଛି ।

ନୀଳକଣ୍ଠ ଉଦାସ ଦୃଷ୍ଟିରେ ଲାବଣ୍ୟକୁ ଚାହିଁ ରହିଲେ । ତାର ମନେ ପଡ଼ିଲା ଏଇ ଯେଉଁଦିନ ଶ୍ୱଶୁର ଶାଶୁଙ୍କଠୁ ବିଦାୟ ନେଇ ଆସିବାବେଳେ ସେମାନେ ମଧ୍ୟ ତାକୁ ଏମିତି ଚାହିଁଥିଲେ । ଏଇ ଚାହାଁଣିଟାହିଁ ମର୍ମଭେଦୀ । ଏହି ଚାହାଁଣି ଭିତରେ ରହିଛି କେତେ ଆଶା ଆଉ ନିରାଶା । ସେଦିନ ଶାଶୁଘରୁ ଆସିବା ମୁହୂର୍ତ୍ତରେ ଏଇ ଚାହାଁଣିରେ ଅସ୍ଥିର ହୋଇ ଶାଶୁଙ୍କୁ ଏକା ଏକା ଲାବଣ୍ୟ କହିଥିଲା—ମା', ତୁମେ ଯେଉଁଥିପାଇଁ ବ୍ୟସ୍ତ ହଉଛ, ସେ ଅଭାବ ତୁମର ଆଉ ରହିବ ନାହିଁ ।

ଲାବଣ୍ୟର ଏଇ ଆଶ୍ୱାସନା ବାଣୀରେ ରଙ୍ଗଲତାଙ୍କ ମୁହଁରେ ଫୁଟିଉଠିଥିଲା ପରିତୃପ୍ତିର ଅଢନ କଦମ୍ବ । ସତେ କି ରାଧାମାଧବ କାମନା ପୂରଣ କରିବେ !

ତ୍ରିଭୁବନର ମଙ୍ଗଳପାଇଁ ଦଧୀଚି ଋଷି ତାଙ୍କର ଅସ୍ଥି ଦାନ କରିଗଲେ । ଗୋଟିଏ ପରିବାରର ମଙ୍ଗଳପାଇଁ ଲାବଣ୍ୟ କଣ ରକ୍ତଦାନ କରିପାରିବ ନାହିଁ ? ତାର ବିଶ୍ୱାସ ଦୃଢରୁ ଦୃଢ଼ତର ହେଉଛି—ସେ ପାରିବ ।

ଦାଣ୍ଡଦୁଆରେ ଗାଁର ଯୁବକଯୁବତୀମାନେ ଆସି ଜୁଟି ହୋଇଗଲେଣି । କନକ ପ୍ରଚାର କରିଦେଇଛି—ନାମୀ ଆଉ ଏ ଗାଁରେ ବେଶି ଦିନ ରହିବେନି । ଯିବା ପାଇଁ ସବୁ ଯୋଗାଡ଼ଯନ୍ତ୍ର କରିସାରିଲାଣି ।

କନକର ଏଇ କଥାରେ ସାରା ଗାଁରେ ବିଷାଦର ଏକ ଘୂର୍ଣ୍ଣିବାତ୍ୟା କ୍ଷଣକ ଭିତରେ ଖେଳିଯାଇଛି । ଲାବଣ୍ୟ ଚାଲିଗଲେ ଗାଁରେ ଗଢ଼ିଉଠିଥିବା ସାନ୍ଧ୍ୟ ସ୍କୁଲ, ପ୍ରୌଢ଼-ଶିକ୍ଷାକେନ୍ଦ୍ର, ପାଠାଗାର ପ୍ରଭୃତି ଚଳିବ କେମିତି ? ଗାଁର କଳିତକରାଳ ମନାନ୍ତର ପ୍ରଭୃତିର ସମାଧାନ ହେବ କିପରି ? ଅନାଥ ପିଲାମାନଙ୍କ ଆଶ୍ରମର

ଦାୟିତ୍ୱ ନେବ କିଏ ? ଆଉ ଗାଁ ହାଇସ୍କୁଲରେ ପଢୁଥିବା ଏଇ ଗାଁର ଦରିଦ୍ର ପିଲାମାନଙ୍କୁ ସାହାଯ୍ୟ କରିବ କିଏ ? ମନ୍ତ୍ରୀ ଅରବିନ୍ଦବାବୁଙ୍କୁ କହି ଗାଁର ପୁରୁଣା ପୋଖରୀର ପୁନରୁଦ୍ଧାର ପାଇଁ ଲବଣ୍ୟ ଯେଉଁ ପାଞ୍ଚହଜାର ଟଙ୍କା ମଞ୍ଜୁର କରେଇଛୁ, ସେ ଟଙ୍କା ମିଳିବ କେମିତି ? ସେମାନଙ୍କର ଅଳି—ଲବଣ୍ୟନାନୀ ଗାଁ ଛାଡ଼ି ନଯାଉ ।

ଚଳେ ଏକାଠି ହୋଇ ସେମାନେ ଏକ ନୂଆ କଥା କରିପକେଇଛନ୍ତି । ସମସ୍ତେ ସମସ୍ୱରରେ କହୁଚନ୍ତି—ଲବଣ୍ୟନାନୀ ଜିନ୍ଦାବାଦ, ଲବଣ୍ୟନାନୀ ଜିନ୍ଦାବାଦ ।

ଏଇ ଜିନ୍ଦାବାଦ ଦେ ପଙ୍ଗୁ ନୀଳକଣ୍ଠଙ୍କ ମନରେ ମଧ୍ୟ ଶିହରଣ ଆଣିଚି । ଏଇ ଶବ୍ଦ ଶୁଣି ସେ ଯେମିତି ଉନ୍ମାଦନାରେ ଚଞ୍ଚଳ ହୋଇଉଠିଛନ୍ତି । ଚଲିକୁ ଆସି ସମବେତ ଯୁବକ ଯୁବତୀମାନଙ୍କୁ ଉଦ୍‌ବୋଧନ ଦେବାକୁ ଆରମ୍ଭ କରିଦେଇଛନ୍ତି ।

ଲବଣ୍ୟ ନବାକ୍ ନିସ୍ପନ୍ଦ ହୋଇ ପାଖରେ ଠିଆହୋଇଚି ।

ଠିକ୍ ସେଇ ମୁହୂର୍ତ୍ତରେ ଶ୍ରୀକାନ୍ତଙ୍କୁ ବାଲେଶ୍ୱରରୁ ବୋହିଆଣିଥିବା ଜିପ୍ ଆସି ପହଞ୍ଚିଚି । ଘର ଆଗରେ ଏଇ ଦୃଶ୍ୟ ଦେଖି ଶ୍ରୀକାନ୍ତ ଚମତ୍କୃତ । ସେ ଜିପ୍‌ରୁ ଓହ୍ଲାଇବା ପରେ ଯୁବକ ଯୁବତୀମାନେ ତାକୁ ଘେରିଗଲେ । ହଠାତ୍ ପୁଣି ଶୁଭିଲା—ଶ୍ରୀକାନ୍ତ ବାବୁ ଜିନ୍ଦାବାଦ୍—ଲବଣ୍ୟନାନୀ ଜିନ୍ଦାବାଦ । ଆଶ୍ଚର୍ଯ୍ୟ ! ଏଥର ନେତୃତ୍ୱ ନେଇଚି କନକ ।

ଶ୍ରୀକାନ୍ତ ମଧ୍ୟ ଧୀରସ୍ଥିର ଭାବରେ ଆସି ନୀଳକଣ୍ଠଙ୍କୁ ପ୍ରଣାମ କରି ତାଙ୍କର ପାଖରେ ଠିଆହେଲା ।

ଗାଁର ପିଲାଏ କହିଲେ—ଆମେ ଲବଣ୍ୟ ନାନୀକୁ ଛାଡ଼ିବୁ ନାହିଁ…ଛାଡ଼ିବୁ ନାହିଁ ।

ଶ୍ରୀକାନ୍ତ ଏଇଭଳି ଦୃଶ୍ୟ ଦେଶ-ବିଦେଶରେ ବହୁ ନେତାନେତ୍ରୀଙ୍କୁ କେନ୍ଦ୍ର କରି ଘଟିଥିବାର ଦେଖିଚି । ଗାଁରେ ଆଜି ଠିକ୍ ସେଇ ଦୃଶ୍ୟ । ଏ ଦୃଶ୍ୟର ନାୟକ କିଏ ? ନୀଳକଣ୍ଠ ? ନା । ଏ ଦୃଶ୍ୟର ନାୟିକା ତାହାରି ସ୍ତ୍ରୀ ଲବଣ୍ୟ ମହାପାତ୍ର । ଲବଣ୍ୟ ଆଜି ନେତ୍ରୀ ।

ନୀଳକଣ୍ଠ ପିଲାମାନଙ୍କୁ ଉଦ୍ଦେଶ୍ୟ କରି କହିଲେ—ତୁମେମାନେ ଏବେ ଘରୁ ଯାଅ । ପୁଣି କାଲି ଆମେ ଏକାଠି ହେବା ।

ସମବେତ ଯୁବକ-ଯୁବତୀ ଚାଲିଗଲେ । ରହିଗଲେ ନୀଳକଣ୍ଠ, ଶ୍ରୀକାନ୍ତ, ଲବଣ୍ୟ ଓ କନକ ।

ଦୂରରୁ ଶୁଭୁଥିଲା ଜିନ୍ଦାବାଦ ଶବ୍ଦ । ସେ ଶବ୍ଦ ଆଉ ଯେମିତି ଲିଭିବାର ନୁହେଁ । □□□

# ଉନେଶଇଶ

ଶ୍ରୀକାନ୍ତ ମୂକ ପାଲଟିଯାଇଛି । ଘର ଭିତରେ ବିରାଜମାନ କରିଛି ମୌନତା । ଲବଣ୍ୟ ବି ତାର ବାକ୍‌ଶକ୍ତି ହରେଇ ବସିଚି । ଅନେକ କଥା କହିବ କହିବ ଭାବି ଶ୍ରୀକାନ୍ତକୁ ସେ କିଛି କହିପାରୁନାହିଁ । ତା ଆଗକୁ ଯିବାକୁ ମଧ୍ୟ ତାକୁ ସଙ୍କୋଚ ଲାଗୁଛି । ଦରକାରୀ ଜିନିଷ ପଠାଇବାକୁ ହେଲେ ସେ କନକ ହାତରେହିଁ ପଠାଇଦେଉଛି । କନକ ସବୁବେଳେ ଅପେକ୍ଷା କରୁଛି ଭଉଣୋଇ ଯଦି କିଛି କହିବେ । ନୀରବତା ଭିତରେ କେତେ ଘଣ୍ଟା ଅତିବାହିତ ହୋଇଗଲା । ଇତିମଧ୍ୟରେ ଖାଇବା ପର୍ବ ଶେଷ ହୋଇଗଲା । ଖାଇବାବେଳେ ଲବଣ୍ୟ ଶ୍ରୀକାନ୍ତର ପାଖରେ ରହିଥିଲା । ମା' ଥିଲେ, ସେ ସିନା ସବୁ ଦେଖୁଥିଲେ, ସେ ତ ନାହାନ୍ତି, ତେଣୁ ଲବଣ୍ୟକୁ ହିଁ ରହିବାକୁ ପଡ଼ିଚି । କନକ ପରଷା-ପରଷି କରୁଛି । ଶ୍ରୀକାନ୍ତ ବେଶ୍ ଗମ୍ଭୀର ଦେଖାଯାଉଛି । ସେ ଖାଇସାରିବା ପରେ କନକ ତାକୁ ଶୋଇବା ଘରକୁ ନେଇଗଲା । ପଲଙ୍କ ମୁଣ୍ଡ ପାଖର ଟିପସ୍ ଉପରେ ପାଣି ଜଗ୍, ଗ୍ଲାସ୍ ରଖିଦେଲା । ମଶାରି ପକେଇ ଦେଇ କହିଲା—ଶୁଅନ୍ତୁ ।

ଶ୍ରୀକାନ୍ତ କହିଲା—ଶୋଇବି । ମୋର ଡେରିରେ ତ ଶୋଇବା ଅଭ୍ୟାସ । ତୁମେ ଯାଅ ଖାଇବ ।

କନକ ଚାଲିଆସିଲା । ଗୋଟିଏ ରାତି ପାଇଁ ବଦାନ୍ତି । ପୁଣି କାଲି ସକାଳେ ଦେଖାହେବ । କନକ ଆସିବା ପରେ ଲବଣ୍ୟ ଓ ସେ ଖାଇ ବସିଲେ । କନକ ଆଉ ଏଣିକି ଶ୍ୱଶୁରଘରେ ଆମିଷ ଖାଉନାହିଁ । ତାର ଖାଇବାଇଚ୍ଛା ପ୍ରକାଶ୍ୟ ହୋଇଗଲାଣି । ଲବଣ୍ୟ ମଧ୍ୟ ତା ମା'ଙ୍କର ଅଳଙ୍କାରରୁ ତାକୁ କିଛି ପିନ୍ଧାଇଦେଲାଣି; ବାକୀ ରହିଚି ଖାଲି ଚୁଡ଼ୀ ଓ ସିନ୍ଦୁର । ଧଳା ଲୁଗା ପରିବର୍ତ୍ତେ ସେ ରଙ୍ଗିନ୍ ଶାଢ଼ି ପିନ୍ଧୁଚି । ତାର ଏଇ ସବୁ ଢଙ୍ଗରୁ ତା ବାପା ମା' ତାକୁ ଦୋଗୁରୁଣୀ ଆଖ୍ୟା ଦେଇଛନ୍ତି ।

ଖାଇସାରିବା ପରେ ଲବଣ୍ୟ କହିଲା—କନକ, ତୋ ଭଉଣୋଇ ତ ଆମ ଶୋଇବା ଜାଗା ଦଖଲକରି ଶୋଇଲେଣି, ଆମେ ଚାଲ ବାପାଙ୍କ ଘରେ ତଳେ ବିଛେଇ ଶୋଇପଡ଼ିବା ।

କନକ ପ୍ରତିବାଦ କଲା—ଏ କି କଥା କହୁଚ ନାନି ! ମୁଁ ବଡ଼ବାପାଙ୍କ ଘରେ ତଳେ ଶୋଇପଡ଼ିବି । ଭଉଣୋଇ ମତେ କହିଥିଲେ ତମକୁ ଶୀଘ୍ର ପଠେଇ ଦେବାପାଇଁ, ଡେରିହେଲେ ମୋତେ ଦୋଷ ଦେବେ । ତମେ ଚାଲିଲ, ତମକୁ ମୁଁ ସେଠି ପହଞ୍ଚେଇ ଦେଇ ଆସେ ।

କନକର କଥା ଶୁଣି ଲାବଣ୍ୟ ହସିଲା—ମୁଁ କଣ ନୂଆବୋହୂ ହୋଇ ଯାଉଚି ଯେ ମତେ ପହଞ୍ଚେଇଦେଇ ଆସିବୁ । ବରଂ...

କଥା ଏଇଠି ଅଟକିଗଲା—ସେ ଆଉ କିଛି କହିପାରିଲା ନାହିଁ । ହୁଏତ ସେ ଯାହା କହିବାକୁ ଚାହୁଁଥିଲା ସେଇଟା କହିବାପାଇଁ ତା' ଜିଭ ଲେଉଟିଲା ନାହିଁ ।

କନକ କିନ୍ତୁ ତାକୁ ଟାଣି ଟାଣି ଉପରକୁ ନେଇଗଲା । ଶୋଇବାଘର ଦରଜା ପାଖରେ ଟଣାଟଣି । ଉଭୟ ଚେଷ୍ଟା କରୁଥିଲେ ଅନ୍ୟକୁ ଘର ଭିତରକୁ ଠେଲିଦେବାକୁ । ଦରଜା ପାଖରେ କ ଶବ୍ଦ ହେଲା ଶୁଣି ଶ୍ରୀକାନ୍ତ ବାହାରି ଆସିଲା । ତାକୁ ଦେଖି ଉଭୟେ ସ୍ଥିର ହୋଇଗଲେ । ତା'ପରେ କନକ ବଡ଼ବାପାଙ୍କ ଶୋଇବା ଘର ଭିତରକୁ ଯାଇ ଭିତରୁ କବାଟ ବନ୍ଦକରିଦେଲା ।

ଶ୍ରୀକାନ୍ତ ଫେରିଗଲା ପଲଙ୍କ ଉପରକୁ ଉଁ ଚୁଁ କିଛି ନକହି । ତାର ଏ ବ୍ୟବହାର ଲାବଣ୍ୟଙ୍କୁ ଆହୁରି ଭାବିତ କଲା ।

ସେ କଣ ବିଶ୍ୱାସଘାତିନୀ !

ସେ କଣ ଅବିଶ୍ୱାସିନୀ !

ବାରଣ୍ଡାରେ ଠିଆ ହୋଇ ସେ କିଛି ସମୟ ଆକାଶକୁ ଚାହିଁରହିଲା । ତାରାପୁଞ୍ଜ ମିଟିମିଟି କରି ତଳ ଦୃଷ୍ଟିରେ ଚାହିଁଛନ୍ତି । ମଝିରେ ମଝିରେ ଭାସମାନ ମେଘ । ଶ୍ରୀକାନ୍ତର ନିଃଶ୍ୱାସ ଶବ୍ଦ ଶୁଭୁଚି ।

ସେ ଭିତରକୁ ଗଲା । ଆଲୁଅକୁ ନିଷ୍ପ୍ରଭ କରି ଘର ଦରଜାରେ ଛିଟିକିଣି ଲଗେଇଦେଲା । ପଲଙ୍କ ପାଖରେ ଠିଆହୋଇ ଲମ୍ବହୋଇ ଶୋଇଥିବା ଶ୍ରୀକାନ୍ତକୁ ଚାହିଁଲା । ଶ୍ରୀକାନ୍ତ ଶୋଇରହିଚି । ସ୍ପନ୍ଦନହୀନ ଜଡ଼ତା ତାକୁ ଘାରିଛି । ଆଖିପତା ବନ୍ଦ ଯଦିଓ, ସେ ଜାଗ୍ରତ ।

ଲାବଣ୍ୟ ଧୀରେ ଧୀରେ ଯାଇ ପାଦ ପାଖରେ ବସିଲା । ପାଦରେ ହାତ ବୁଲେଇଲା । ଶ୍ରୀକାନ୍ତ ତଥାପି ନୀରବ ।

ଲାବଣ୍ୟ ଅପରାଧିନୀ !

ଯଦି, ସେ କ୍ଷମା ମାଗିବ । ତା ପାଇଁ ଶ୍ରୀକାନ୍ତର ଜୀବନ ଧ୍ୱସ୍ତ-ବିଧ୍ୱସ୍ତ ନ ହେଉ ।

ଶ୍ରୀକାନ୍ତର ନୀରବତା ତା ପାଖରେ ଏକ ଦୁର୍ଲଭ ଅନୁଭୂତି । ଏଭଳି ପରିସ୍ଥିତି ଆଗରୁ ତ କେବେ ହୋଇନି ! ଯେତେ ରାଗିଥିଲେ ବି ରାତିପହରର ନିର୍ଜନ କକ୍ଷରେ ଉଭୟ ଉଭୟଙ୍କ ପାଇଁ ନିମିଷକେ ସବୁ ରାଗ ଭୁଲିଯାଇ ନିକଟରୁ ନିକଟତର, ଦୁଇରୁ ଏକ ହୋଇଛନ୍ତି । ଆଜିଟା ହିଁ ବ୍ୟତିକ୍ରମ ।

ଏ ବ୍ୟତିକ୍ରମ ପାଇଁ ଦାୟୀ କିଏ ?

ଲାବଣ୍ୟ ?

ହଁ, ସେ ହିଁ ଦାୟୀ । ଶ୍ରୀକାନ୍ତର ଅନୁମତି ନ ନେଇ ଗାଁର ସଙ୍ଗଠନ ଭିତରେ ସେ ପଶିଲା କାହିଁକି ? ଗାଁର ଜଡ଼ ପିଲାମାନଙ୍କ ମନରେ ଜୀବନ ସଂଗ୍ରାମର କଳା କାହିଁକି ? ଅପରାଧପାଇଁ ସେ ଦଣ୍ଡ ପ୍ରାର୍ଥନା କରିବ । ସେ ଦଣ୍ଡ ତା'ପାଇଁ ଯେତେ କଠୋର ହେଉ ପଛେ ସେ ହସି ହସି ତାହା ଗ୍ରହଣ କରିବ । ଶ୍ରୀକାନ୍ତଙ୍କୁ ସୁଖୀ କରିବାପାଇଁ ସେ ଜୀବନ ପଣ କରିବ ।

ଆଖିରୁ ତାର ବହୁଥିଲା ଧାର ଧାର ଲୁହ । ସେ ଲୁହ ଟପ୍-ଟପ୍ କରି ଯାଇ ପଡ଼ୁଥିଲା ଶ୍ରୀକାନ୍ତର ପାଦ ଉପରେ । ସେ ଚମକି ଉଠିଲା ।

ଲାବଣ୍ୟ କାନ୍ଦୁଛି ।

ସେ କଣ ପରାଜିତା ? ଅନୁତପ୍ତା ?

ଚିରଦିନ ନାରୀର ଏଇ ଲୁହ ପାଖରେ ପୁରୁଷ ଦୁର୍ବଳ ।

ଶ୍ରୀକାନ୍ତ ଲାବଣ୍ୟଙ୍କୁ ତାର ଛାତି ପାଖକୁ ଟାଣିଆଣିଲା ।

—ଛିଃ, ତୁମେ କାନ୍ଦନାହିଁ । ମୋ ରାଣ । ତୁମେ କାନ୍ଦ ନାହିଁ ।

ସ୍ୱାମୀର ଏଇ ସହାନୁଭୂତିପୂର୍ଣ୍ଣ ବାକ୍ୟରେ ଲାବଣ୍ୟ ଆହୁରି କଇଁକଇଁ ହୋଇ କାନ୍ଦିଲା । ପ୍ରବଳ ବର୍ଷାରେ ହଠାତ୍ ଗିରିନଦୀ କୂଳ ଲଙ୍ଘିଲା ଯେମିତି ।

ତାର କଟୀକୁ ବେଷ୍ଟନ କରିଛି ଶ୍ରୀକାନ୍ତର ହାତ । ସେ ତା ଓଠରେ ଓଠ ଛୁଆଁଇଲା । ସ୍ତ୍ରୀମାନଙ୍କ ଅଭିମାନ ଭଙ୍ଗ କରିବାର ଅମୋଘ ଔଷଧ ଯାହା ତାକୁ ଜଣା, ସେ ସବୁତକ ପ୍ରୟୋଗ କଲା । କ୍ଳାନ୍ତ ଶ୍ରାନ୍ତ ରଜନୀ ଗଭୀରରୁ ଗଭୀରତର ହେଲା । ଦୁଇଜଣ ସମ୍ବିତ୍ ଫେରପାଇଲେ ।

ପ୍ରଥମେ ଲାବଣ୍ୟହିଁ ଆରମ୍ଭ କଲା ।

ତୁମେ ଖୁବ୍ ରାଗିଛ, ନା ? —ତାର ପ୍ରଶ୍ନ ।

ଶ୍ରୀକାନ୍ତ ପୁଣି ସହଜ ଭାବରେ କହିଲା—ରାଗିଥିଲି । ହେଲେ ବର୍ତ୍ତମାନ ଭାବୁଚି ରାଗିବାଟା ଅନ୍ୟାୟ । ତୁମର ଦୋଷ କିଛି ନାହିଁ । ମୁଁ ଯଦିଓ ଭାଗ୍ୟବାଦୀ ନୁହେଁ, ତଥାପି···

ଲାବଣ୍ୟ ପାଦ ପୂରଣ କଲା—ହଁ, ସବୁ ଭାଗ୍ୟର ଦୋଷ । ଆମକୁ ସେଇଟା ମାନିନବାକୁ ପଡ଼ିବ; କିନ୍ତୁ ଭାଗ୍ୟ ଅମଙ୍ଗଳ ଘଟାଇ ଦେଲା ବୋଲି ଆମେ କଣ ଚୁପ୍‌ଚାପ୍ ରହିଯିବା ? କୌଣସି ପ୍ରତିକାର—ଯାହା ଆମ ସାଧ୍ୟ ଭିତରେ···

ମା' କହୁଥିଲେ···ଶ୍ରୀକାନ୍ତ ଏତକ କହି ଲବଣ୍ୟର ମୁହଁକୁ ଉତ୍ସୁକ ହୋଇ ଚାହିଁ ରହିଲା ।

ଲବଣ୍ୟର ମନେପଡ଼ିଲା ଶାଶୁଙ୍କୁ ସେଦିନ ସେ କହିଥିଲା, ତାଙ୍କ ବଂଶର ଅଙ୍କୁର ସେ ପୂରଣ କରିବ । ସେ କହିଲା—ହଁ, ମା'ଙ୍କୁ ମୁଁ କହିଚି । ତୁମର ଜୀବନକୁ ମୁଁ ଅପୂର୍ଣ୍ଣ ରଖିବି ନାହିଁ ।

ଶ୍ରୀକାନ୍ତର ମୁହଁ ଉଜ୍ଜ୍ୱଳ ହୋଇଉଠିଲା ।

ସତରେ ସୂର୍ଯ୍ୟ କଣ ପ୍ରାକୃତିକ ନିୟମରୁ ବାହାରିଯାଇ ପଶ୍ଚିମ ଦିଗରେ ଉଇଁବେ ? ସଂଧ୍ୟା ପୂର୍ବରୁ କଇଁଫୁଲ ଫୁଟିବ ?

ସେ କହିଲା—ତୁମେ ଦେଶର ସେବା କରିବାରେ ମୋର ଆପତ୍ତି ନାହିଁ । ତା ଦ୍ୱାରା ତୁମେ ଯଦି ଅଧିକ ବିକଶିତ ହୁଅ, ସେଇ ହେବ ମୋର ଗୌରବ ।

ଲବଣ୍ୟ କହିଲା—ମୋର ଗୋଟେ ଅନୁରୋଧ ରଖିବ ?

ଗୋଟାଏ କାହିଁକି, ଏ ମୁହୂର୍ତ୍ତରେ ଶହେଟା ହେଲେ ବି ସେ ରଖିବ । ସେ କହିଲା—କୁହ ।

ଲବଣ୍ୟ ଟିକିଏ ଇତସ୍ତତଃ ହେଲା । ଶ୍ରୀକାନ୍ତର ମୁଣ୍ଡକୁ ନିଜ ଛାତି ଉପରେ ରଖି କହିଲା—ମୋର ଦେଶସେବା କରିବାରେ ତୁମର ଆପତ୍ତି ନାହିଁ । ତା ଭିତରେ ମୁଁ ସିନା ବଞ୍ଚିଯାଇ ପାରିବି । ଅବଶିଷ୍ଟ ଜୀବନ ପାଇଁ ସେ ହେବ ମୋର ଅବଲମ୍ବନ । କିନ୍ତୁ ତୁମେ ତୁମ ଜୀବନ କଟେଇବ କେମିତି ? ହଜାର ହଜାର ମାଇଲ ଦୂରରେ ରହି ସବୁବେଳେ ଦୁଶ୍ଚିନ୍ତା ଭିତରେ ତୁମର ସମସ୍ତ କଟିବ । ଜୀବନ ଖାପଛଡ଼ା ହୋଇଯିବ । ମୁଁ କଣ ଶାନ୍ତିରେ ରହିପାରିବି ?

ଶ୍ରୀକାନ୍ତ କହିଲା—ତୁମେ ଏଠି ଶାନ୍ତିରେ ରହିଲେ ମୁଁ ସେଠି ଶାନ୍ତିରେ ରହିବି । ମୋ ପାଇଁ ତୁମେ ଚିନ୍ତା କରନା । ବରଂ କୁହ, କଣ କଲେ ତୁମେ ଶାନ୍ତିରେ ରହିବ ?

ତୁମେ କରିବ ?—ଲବଣ୍ୟ ପଚାରିଲା ।

—ହଁ ।

ଲବଣ୍ୟ ଶ୍ରୀକାନ୍ତକୁ ଆହୁରି ନିବିଡ଼ ଭାବରେ ଭିଡ଼ିଧରି କହିଲା—ତୁମେ ମତେ ଅନେକ ଦେଇଚ । ମୁଁ ତମକୁ କିଛି ଦେଇନି । ଏଥର ଯାହା ଦେବି ତମେ ନେବ । ମୋ କଥା ମାନି ତୁମେ ଆଉ ଥରେ ବିଭାହୁଅ ।

ହଠାତ୍ ଶ୍ରୀକାନ୍ତର ଦେହରେ ବିଦ୍ୟୁତ୍‌ର ଛୁଆଁ ଯେମିତି ଲାଗିଲା । ସେ ଲବଣ୍ୟକୁ ଠେଲିଦେଇ ଉଠି ବସିପଡ଼ିଲା ।

— କଣ ତୁମେ କହୁଚ ? ମୁଁ ଯାହା ଭାବୁଥିଲି ଠିକ୍ ସେଇଆ । ତୁମ ମୁଣ୍ଡ ବୋଧହୁଏ ବିଗିଡ଼ି ଗଲାଣି । ଏମିତି ପ୍ରସ୍ତାବ ତୁମେ ଦେଇପାରିଲ ?

ଲବଣ୍ୟ ମଧ୍ୟ ବସିପଡ଼ି କହିଲା—ମୁଁ ଅନେକ ଭାବଚିନ୍ତି ତୁମକୁ କହୁଚି । ତୁମେ କଣ ଭାବୁଚ ମୁଁ ପ୍ରଳାପ କରୁଚି ବୋଲି ! ନା ଗୋ, ମୁଁ ଠିକ୍ ଅଛି । ଦୂର ଦେଶରେ ତମର ଭଲମନ୍ଦ ବୁଝିବାପାଇଁ, ତୁମ ବାପାମାଙ୍କ ଇଚ୍ଛା ପୂରଣକରିବାପାଇଁ ତୁମେ ପୁଣି ବାହାହେବ । ତୁମର ପୁଅ ଝିଅ ହେବ । ସେଇମାନଙ୍କୁ ଦେଖିଲେ ମୋ ପ୍ରାଣ କ'ଣ ଥଣ୍ଡା ହେବନି ? ସେମାନେ ମୋତେ କ'ଣ ମା' ବୋଲି ଡାକିବେନି ! ମୁଁ ମରିଗଲେ ସେମାନେ କଣ ମୋପାଇଁ ପିଣ୍ଡ ବାଢ଼ିବେନି ! ତୁମେ ଅମାନିଆ ହୁଅନି । ତୁମ ବାହାଘରର ସବୁ ବ୍ୟବସ୍ଥା ମୁଁ କରିବି ।

ଶ୍ରୀକାନ୍ତର ସବୁ ଚିନ୍ତାଶକ୍ତି ଯେମିତି ଲୋପପାଇଗଲା । ଏହା କଣ ସମ୍ଭବ ?

ଲବଣ୍ୟ ପୁଣି କହିଲା—ବଡ଼ ଗ୍ରହଣ କରିଚ, ତେଣୁ ଆଇନକୁ ଭୟ କରୁଚ ? ଏଥିରେ ଭୟ କରିବାର କଣ ଅଛି ? ଅଛି ଏଇଟା ପରିବାରର ମଙ୍ଗଳପାଇଁ ହେବା କଥା । ଯୋଉ ଆଇନ ତାକୁ ଅଟକାଇଦିଏ, ସେ ଆଇନ ଆଇନ-ବହିରେ ଥାଉ । ଆଉ ଦ୍ୱିତୀୟଥର ବିବାହପାଇଁ ତମର ଯଦି ଅସୁବିଧା କେବେ ସୃଷ୍ଟି ହୁଏ ତେବେ ମୋ ସହିତ ତୁମର ବିବାହକୁ ବିନା ଦ୍ୱିଧାରେ ତୁମେ ଅସ୍ୱୀକାର କରିପାର । ଶ୍ରୀମତୀରୁ କୁମାରୀ ହେବାରେ ମୋର କିଛି ଆପତ୍ତି ନାହିଁ । ପଅରଦିନ ଆମ ମନ୍ଦିରରେ କନକ ସହିତ ତମର ବିବାହ ହେବ । ଯିବାବେଳେ ତାକୁ ତୁମେ ସାଙ୍ଗରେ ନେଇଯିବ । ମୋର ବିଶ୍ୱାସ, କନକ ଭିତରେ ତୁମେ ମତେ ନିଶ୍ଚେ ଖୋଜି ପାଇବ ।···

ସେ ଚୁପ୍ ହେଲା । ଶ୍ରୀକାନ୍ତର ମୁହଁରୁ ମଧ୍ୟ ଭାଷାର ସ୍ଫୁରଣ ନାହିଁ ।

କନକ ! ହତଭାଗିନୀ ସେଇ ଝିଅଟି; ଯେ କି ସମାଜ ଦୋଷରୁ ଚରମ ଦଣ୍ଡରେ ଦଣ୍ଡିତା ହୋଇଚି । ସୃଷ୍ଟିର ଉଦ୍ୟାନରେ ଫୁଲପରି ଫୁଟି ଗନ୍ଧ ବିତରଣ ପୂର୍ବରୁ ଯେ ନିଶ୍ଚିହ୍ନ ହୋଇଯିବାକୁ ବସିଚି । ସୁନା ପରି ଯାହାର ଦେହର ରଙ୍ଗ । ଅଟୁଟ ଯାହାର ସ୍ୱାସ୍ଥ୍ୟ । ଆଖିରେ ଯାହାର ସୃଷ୍ଟି-ସ୍ୱପ୍ନ । ସେଇ କନକ···ତା'ର ଛବି ଶ୍ରୀକାନ୍ତର ଆଖି ଆଗରେ ନାଚଉଠିଲା । ଲବଣ୍ୟ ଆଖିରେ ଧାର ଧାର ଲୁହ । ସେ ଦୂରରୁ ଦୂରକୁ ଚାଲିଯାଉଛି ଯେମିତି । ଶ୍ରୀକାନ୍ତ ମାର୍ବଲ ମୂର୍ତ୍ତିରେ ରୂପାନ୍ତରିତ ହୋଇଗଲାଣି । ସେ ବୁଝିବାକୁ ଅକ୍ଷମ—ଯାହା ସବୁ ଘଟିଯାଉଚି ତାହା ବାସ୍ତବ ନା ସ୍ୱପ୍ନ !

ସତରେ ସେ ଯଦି ଅହଲ୍ୟା ପରି ପଥର ପାଲଟିଯାଇପାରନ୍ତା କୌଣସି ଅନୁଭୂତି ତାକୁ ଆଉ ବିଚଳିତ କରିପାରନ୍ତା ନାହିଁ । କୌଣସି କାମନା ତା ମୁଣ୍ଡର ସୂକ୍ଷ୍ମ ସ୍ନାୟୁକୁ ଘାଣ୍ଟି ଚକଟି ମନ୍ଥନ କରି ତଳ ଉପର କରିଦଅନ୍ତା ନାହିଁ । ସେ

ଦୃଷ୍ଟିଶକ୍ତି ହରଗଲା, ଘ୍ରାଣଶକ୍ତି ହରଗଲା, ସ୍ପର୍ଶେନ୍ଦ୍ରିୟ ତାର ସ୍ପର୍ଶର ଅତୀତ ହୁଅନ୍ତା । ତାହାହେଲେ ସେ ଆଉ ଏତେ କଷ୍ଟ ପାଆନ୍ତା ନାହିଁ । ମାନସିକ ଯନ୍ତ୍ରଣାରେ ଛଟପଟ ହୁଅନ୍ତା ନାହିଁ ।

ଏତେ ଦନ ପରେ ବ ଲବଣ୍ୟ ତା ପାଖରେ ଅବୁଝା ରହିଗଲା । ସେ ଯେ ତା ପାଇଁ ଏତେ ବଡ଼ ତ୍ୟାଗ କରି ବସିବ ଏହା ଥିଲା ତାର କଳ୍ପନାତୀତ । ତାର ଇଚ୍ଛା ହେଉଥିଲା—ଲବଣ୍ୟର ପାଦ ଧରି ସେ ଲୋଟିପଡ଼ିବ ଆଉ କହିବ—ତୁମେ ମହୀୟସୀ···ପ୍ରାତଃସ୍ମରଣୀୟା···ପଞ୍ଚକନ୍ୟାଙ୍କ ପରେ ତୁମେ ହିଁ ଷଷ୍ଠ···ଏ ଯୁଗର ଅହଲ୍ୟା, ଦ୍ରୌପଦୀ, ତାରା···

ଅଥବା···

ମହାସତୀ ଅନସୂୟା···

ପଙ୍ଗୁ ସ୍ୱାମୀକୁ ସନ୍ତୁଷ୍ଟ କରିବାପାଇଁ ଯେ କରିଥିଲା ଲକ୍ଷେ ସ୍ୱାଗର ଆୟୋଜନ ।

ଲବଣ୍ୟ କହିଲା—ଦଲ୍ଲୀରେ ମୋର ଯାହା କଛି ଶାଢ଼ି ଗହଣାଗାଣ୍ଠି ପ୍ରଭୃତ ଅଛି ତାକୁ ସବୁ କନକକୁ ଦେଇଦେବ ।

ଶ୍ରୀକାନ୍ତ କହିଲା—ସବୁ ମୁଁ ନେଇଆସିଛି । ମୋ ସୁଟ୍‌କେଶ ଭିତରେ କଛି ଶାଢ଼ି ଆଉ ସବୁତକ ଗହଣା ଅଛି ।

ଲବଣ୍ୟ କହିଲା—ଆଣିଛ, ଖୁବ୍ ଭଲକରଛ । ପଥରଦନ ବାହାଘରରେ ସେ ସବୁ ଲାଗିଯିବ । ଏଇ ବାହାଘରରେ ଏ ଅଞ୍ଚଳର ଅନେକ ଅନ୍ଧାର କଟିଯିବ । ବାପା ଯୋଉ ଯୁଗ କଥା ଭାବୁଥିଲେ ସେଇ ଯୁଗର ଆରମ୍ଭ ହବ । ଯୋଉଟା ସେ କରିପାରି ନଥିଲେ, ମୁଁ ଆଜ ସେଇଟା କରିବ । ମୋର ଭାରି ଆନନ୍ଦ···

ଆଖିର ଲୁହ ଦୁଇଗାଲର ଉଷ୍ମ ହାଡ଼କୁ ଟପି ଗ୍ରୀବ ଉପରକୁ ପଡ଼ୁଥିଲା ଦୁଇଟି ସ୍ୱଚ୍ଛ ଜଳପ୍ରପାତ ଭଳି । ଶ୍ରୀକାନ୍ତ ତାକୁ ଆଉରି ନବଡ଼ ଭାବରେ ନଜ ଗ୍ରୀବ ଉପରେ ଜାକଧରିଲା । ସତେ ଜ ସେ ଲବଣ୍ୟର ସତ୍ତାକୁ ଆଜ ନଜ ଭିତରେ ମିଶେଇଦବାକୁ ଚାହୁଁଚ ।

ତା' ଆଖିରେ ମଧ ଲୁହ ।

ସେ ବ କାନ୍ଦୁଚ ।

ଉଭୟଙ୍କର ଏଇ କାନ୍ଦବାରେ ସ୍ପଷ୍ଟ ହେଉଚ ମମତାର ସ୍ୱର୍ଗ···

ଲାବଣ୍ୟ କହିଲା—ଛିଃ, ତୁମେ ବି କାନ୍ଦୁଚ ? ପଣତକାନିରେ ଶ୍ରୀକାନ୍ତ ଆଖିର ଲୁହ ସେ ପୋଛିଦେଲା । ତା’ ଓଠରେ ଓଠ ମିଳାଇ କହିଲା—

ଏହା ହିଁ ଅଦୃଷ୍ଟ ! କାନ୍ଦନା !

ଶ୍ରୀକାନ୍ତର ମନେହେଉଥିଲା—ଲାବଣ୍ୟ ଆଉ ସେମିତି ଲାବଣ୍ୟ ହୋଇ ନାହିଁ; ତା’ ଦେହ-ମନରେ ଆଜି ଫୁଲର କୋମଳତା, ଆଉ ସେ ଏକ ଲୁହର ମୂର୍ତ୍ତି ।

ଶ୍ରୀକାନ୍ତ ଶେଷଥର ପାଇଁ ଲାବଣ୍ୟ ଦେହର ସମସ୍ତ ମଧୁକୁ ନିଃଶେଷ କରି ଦେବାକୁ ବ୍ୟଗ୍ର ଥିଲା । □□□

ଆରମ୍ଭ : ୧୫ । ୩ । ୭୯

ଶେଷ : ୧୭ । ୪ । ୭୯